# ଚନ୍ଦ୍ରେ ସୁଷାର
# ଚନ୍ଦ୍ରାଲୋକ



ଭୂପେନ୍ ମହାପାତ୍ର

# ଚନ୍ଦ୍ରସେଣାର ଚନ୍ଦ୍ରାଲୋକ

ଭୂପେନ ମହାପାତ୍ର

ସ୍ୱସ୍ତି ପ୍ରକାଶନୀ
ରାଉରକେଲ୍

Chandrasenara Chandraloka
Written by : Sj. Bhupen Mohapatra
L/45, Chhend, Rourkela
Published by : Swasti Prakashanee, M/53, Chhend
Rourkela - 769015, Phone - 581144
Printed at : Mandakinee Printers, 40/B, I D. C.
Kalunga, Sundargarh - 31
Ist Publi. : Dipabali 2000
Rate : Rs. 35/-(Thirty Five only)

# ॥ ନିଜ କଥା ॥

ବ୍ୟଙ୍ଗର ବିକଳ୍ପ କାହିଁ ? ବ୍ୟଙ୍ଗ, କଟୂକ୍ତି, ଥଟ୍ଟା ଓ ପରିହାସ ଯାହା ସୁନ୍ଦର ଓ ସାବଲୀଳ କଥା ମାଧ୍ୟମରେ ପରିବେଷିତ ହେଲେ ପାଠକ ଉପରେ ଅତି ଅଳ୍ପ ସମୟ ଭିତରେ ଗଭୀର ପ୍ରଭାବ ପକାଏ, ତା ଭିତରେ ଗୋଟାଏ ଆଲୋଡ଼ନ ସୃଷ୍ଟି କରେ । ତାର ବିକଳ୍ପ କାହିଁ ? ନାଟକ ପରେ ବ୍ୟଙ୍ଗ ଏକମାତ୍ର ସାହିତ୍ୟ ଯାହା ପାଠକକୁ ଆକ୍ରାମାକ୍ରା କରିଦିଏ ଏବଂ ଶେଷରେ ଗୋଟାଏ ପରିବର୍ତ୍ତନ ଆଡ଼କୁ ଟାଣି ନେଇଯାଏ ।

ଅନ୍ୟାନ୍ୟ ଭାରତୀୟ ସାହିତ୍ୟ ପରି ଓଡ଼ିଆରେ ବ୍ୟଙ୍ଗ ସାହିତ୍ୟ ବହୁ ପୂର୍ବ କାଳରୁ ତାର ଆସନ ଦଖଲ କରି ଆସୁଅଛି । 'କଳମା ଚଉତିଶା' ଠାରୁ ଆରମ୍ଭ କରି 'ଚତୁର ବିନୋଦ' ମଧ୍ୟ ଦେଇ ଆମର ଏବର ସାହିତ୍ୟକୁ ହାସ୍ୟରସ ବା ବ୍ୟଙ୍ଗ ଯେପରି ଭାବରେ ଶ୍ରୀ ମଣ୍ଡିତ କରିଛି ତାର ତୁଳନା ନାହିଁ । ଆଧୁନିକ ଗଳ୍ପ ସାହିତ୍ୟର ସ୍ରଷ୍ଟା ଫକୀର ମୋହନ ସେଥିରେ ଆଉ ଏକ ନୂଆ ମାଇଲ ଖୁଣ୍ଟ ଯୋଡି ଦେଲେ । ତା ପରଠୁ ଗଡ଼ି ଆସିଛି ସେ ଗତିର ଅବାରିତ ଧାରା । ଦିନ ଯେତିକି ଗଡ଼ି ଯାଉଛି ସେ ସାହିତ୍ୟ ଅଧିକ ମହିମା ମଣ୍ଡିତ ହୋଇ ପାଠକ ଆଗରେ ଠିଆ ହେଉଛି । ସେ ଅଧିକରୁ ଅଧିକ ଆଦର ଲାଭ କରୁଛି ।

ସାଧାରଣ ଜନତା ଅପେକ୍ଷା ରାଜନୈତିକ ନେତା ଓ ମନ୍ତ୍ରୀମାନଙ୍କ ଭିତରେ ଯଥେଷ୍ଟ ବ୍ୟଙ୍ଗର ଖୋରାକ ଅଛି ବୋଲି ମୁଁ ମନେ କରେ । ବ୍ୟଙ୍ଗର ସେଇ ଅଫୁରନ୍ତ ଉତ୍ସଟିକୁ ଠିକ ଭାବରେ ଉପଯୋଗ କରି ପାରିଲେ ଆମ ସାହିତ୍ୟର ଅନେକ ଖାଲି ଜାଗା ଯେ କେବଳ ପୂରଣ ହୋଇ ପାରିବ ତାନୁହେଁ ସମାଜକୁ ବଦଳେଇବାରେ ଏହା ବେଶି ସହାୟକହେବ । କାରଣ ବ୍ୟଙ୍ଗ ଯେଉଁମାନଙ୍କ ଉଦ୍ଦେଶ୍ୟରେ ପ୍ରେରିତ ସେଇମାନଙ୍କ ପାଇଁ ଏହା ବେତ ମାଡ଼ ପରି କାମ କରେ । ସେମାନେ ସେଥିରେ ଅତିଷ୍ଠ ହୋଇ ଉଠନ୍ତି । ଆମ ଗଣତନ୍ତ୍ରରେ ଥିବା ଏ ରାଜନୈତିକ ଜୋକରମାନଙ୍କୁ ବ୍ୟଙ୍ଗର ବେତ ମାଡ଼ ଦେଇ ଠିକଣା ବାଟକୁ ଆଣିବା ଲେଖକମାନଙ୍କର ପ୍ରଧାନ ଓ ପବିତ୍ର କର୍ତ୍ତବ୍ୟ ।

ମୁଁ ମୋର ପ୍ରାପ୍ତ ସବୁ ବ୍ୟଙ୍ଗ ଗଳ୍ପରେ ମନ୍ତ୍ରୀ / ନେତାମାନଙ୍କର ସ୍ତ୍ରୀର ନାମ 'ଉର୍ବଶୀ' ଦେଇଛି । ତାର କାରଣ ମୋର ଧାରଣା ସ୍ୱର୍ଗର ଉର୍ବଶୀ ହିଁ କେବଳ ଆଜିର ନେତାମାନଙ୍କର ସ୍ତ୍ରୀର ସ୍ଥାନ ପୂରଣ କରି ପାରିବେ । ଅନ୍ୟ କେହି ନୁହେଁ ।

ମୋର ପ୍ରଥମ ବ୍ୟଙ୍ଗ ଗଳ୍ପ ସଙ୍କଳନ 'ଭାରତ ଭାଗ୍ୟ ବିଧାତା' ସୃଷ୍ଟି ପ୍ରକାଶନୀ ଦ୍ୱାରା ପ୍ରକାଶିତ ହୋଇ ମାତ୍ର କେଇଟା ଦିନ ଭିତରେ ଯେପରି ଭାବରେ ପାଠକୀୟ ଆଦୃତି ଲାଭ କଲା ସେଥିରେ ଖାଲି ପ୍ରକାଶକଙ୍କର ନୁହେ ମୋର ମଧ୍ୟ ଉତ୍ସାହ ଅନେକ ବଢ଼ିଗଲା । ସୁଖର କଥା ଏବେ ସେଇ ପ୍ରକାଶକଙ୍କ ଦ୍ୱାରା ମୋର ଦ୍ୱିତୀୟ ବ୍ୟଙ୍ଗ ଗଳ୍ପ ସଙ୍କଳନ 'ଚନ୍ଦ୍ରସେଣାର ଚନ୍ଦ୍ରାଲୋକ' ପ୍ରକାଶ ପାଇବାକୁ ଯାଉଛି ।

ଶେଷରେ ମୋର ବନ୍ଧୁ ବିଶିଷ୍ଟ କବି ତଥା ସଙ୍ଗଠକ ଶ୍ରୀ ରାଜୀବ ପାଣି ଏହି ସଙ୍କଳନଟିକୁ ମାତ୍ର ପନ୍ଦର ଦିନ ଭିତରେ ଏବଂ ବିଶେଷ କରି ଆସନ୍ତା ଅକ୍ଟୋବର ୨୮ଓ୨୯ରେ ରାଉରକେଲାରେ ହେବାକୁ ଥିବା ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ ସାହିତ୍ୟ ସଭା ଅବସରରେ ଉନ୍ମୋଚିତ ହେବାକୁ ଯାଉଥିବାରୁ ମୁଁ ବିଶେଷଭାବେ ତାଙ୍କଠାରେ କୃତଜ୍ଞ ।

**ଲେଖକ**

**କ୍ରମ :-** ଚନ୍ଦ୍ରସେଣାର ଚନ୍ଦ୍ରାଲୋକ-୧, ରହାର ସେଲ-୧୭, ରଂ ସିଗ୍‌ନାଲ୍‌-୨୧, ସାଲୟ୍‌-୨୭, ଆଜି ଏକ ମୁହଁ-୩୧, ଅପରନ୍ତି ଗଡ-୩୭, ଭାରତ ବର୍ଷ-୪୨, ଶୀର୍ଷାସନ-୪୮, ଅପାଣ୍ଡବା ରାଜ୍ୟରେ-୫୨, ଓ ଅଂଜନା -୫୯, ବସନ୍ତ ଓ ବାତ୍ୟା-୬୩, ମହାରାଜା ଓ ମହୁମାଛି-୬୯, ଯୋଗ ଦେଲେ -୭୭, ନପୁଂସକ ମାନଙ୍କ ରାଜ୍ୟରେ-୮୧ ।

॥ ଚନ୍ଦ୍ରସେଣାର ଚନ୍ଦ୍ରାଲୋକ ॥

ସେଦିନ ମୋତେ ମୁଖ୍ୟମନ୍ତ୍ରୀ ଡକେଇଚନ୍ତି ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଖ୍ୟମନ୍ତ୍ରୀ ମୋତେ ବା କାହିଁକି ଡକେଇବେ । ମୋ'ଠି ତାଙ୍କର କଅଣ କାମ ଥାଇପାରେ ସେ କଥା ଚିନ୍ତା କଲାବେଳକୁ ମୋ ମୁଣ୍ଡ ବୁଲେଇ ଦେଲା । ମୋଟ କଥା ହେଲା ମୁଖ୍ୟମନ୍ତ୍ରୀ ମୋତେ ଯେ ଜାଣିଥିବେ ଏକଥା ମୁଁ ଚିନ୍ତା କରି ପାରୁ ନ ଥାଏ ।

ମୋ'ର ଯେତେ ଦୂର ମନେ ପଡ଼ୁଚି ତାଙ୍କ ସହିତ ମୋର ମାତ୍ର ଦୁଇଥର ଦେଖା ହୋଇଚି । ଥରେ ଟିକଟ ମିଳିବା ଦିନ ପାର୍ଟି ଅଫିସ୍‌ରେ । ସେତେବେଳେ ସେ 'ଉଇସ୍ ୟୁଅ ଗୁଡ଼ଲକ୍" କହିବାକୁ ମାତ୍ର ତିନି ମିନିଟ୍ ପାଇଁ ଆସିଥିଲେ । ହଲ ଭର୍ତ୍ତି ଥିଲା । ଯୋଉମାନେ ଟିକେଟ ପାଇଥିଲେ ଓ ଯୋଉମାନେ ଟିକେଟ ପାଇ ନ ଥିଲେ-ସେ ସମସ୍ତେ ଥିଲେ । କେବଳ ତାଲିକାରୁ ମୋ ନାଁ ଟା ସେ ଜାଣିଥିବେ । କାରଣ ସେଥର ପଚିଶ ପରସେଣ୍ଟ 'ନ୍ୟୁବ୍ଲଡ୍' ନେବାର ଯୋଉଯୋଜନା ଥିଲା, ମୁଁ ତାଭିତରୁ ଜଣେ । ତେବେ ସେଦିନ ସେଇ ମୋତକ କହି ସେ ହଲରୁ ଏତେ ଶୀଘ୍ର ବାହାରି ଗଲେ ଯେ ତାଙ୍କ ସହିତ ପଦେ କଥା ହେବାକୁ ଟିକଟ ପାଇ ନଥିବା ଲୋକମାନେ ମୋତେ ଜଲଦି ଦଉଡ଼ ଦଉଡ଼ ଚଲେ ମଧ୍ୟ ସେମାନେ ଗେଟ୍ ଧରିଲା ବେଳକୁ ମୁଖ୍ୟମନ୍ତ୍ରୀଙ୍କ କାର ଷ୍ଟାର୍ଟ ହୋଇ ସାରିଥିଲା ।

ଆଜି ଦ୍ୱିତୀୟ ଥର ସେ ମୋତେ ଯୋଉଦିନ ଭେଟିଥିଲେ ସେଦିନ ମଧ୍ୟ ସେଇ ପାର୍ଟି ଅଫିସ୍‌ରେ । ଆମର ସେଦିନ ବିଜୟ ପର୍ବ ପାଳନ ହେଉଥାଏ । ଆମେ ସବୁ ଗୋଟାଏ ଲମ୍ବା ଧାଡ଼ିରେ ଠିଆ ହୋଇଥାଉଁ । ସେ ଜଣ ଜଣ କରି ସମସ୍ତଙ୍କ ସହିତ କରମର୍ଦ୍ଦନ କରୁ ଥାଆନ୍ତି । ମୋ ପାଖକୁ ଆସି ମୋ ଆଡ଼କୁ ହାତ ବଢେଇଲା ବେଳକୁ ମୁଁ ଲମ୍ବ ହୋଇ ତାଙ୍କ ପାଦ ତଳେ ପଡ଼ି ଯାଇଥିଲି ଗୋଟାଏ ଅଜଣା ଆବେଗରେ । ମୋତେ

ଅନ୍ୟମାନେ ଜଠେଇ ଠିଆ କରେଇଲେ । ସେତକବେଳେ ମୁଁ ବୁଝିପାରିଲି ଯେ ମୁଁ ତଳେ ପଡ଼ି ଯାଇଥିଲି । ଅନ୍ୟମାନେ ମୋ ସାର୍ଟରୁ ଧୂଳି ଝାଡ଼ିବା ସମୟରେ କେତେବେଳେ ଯେ ସେ ମୋତେ ଅତିକ୍ରମ କରି ଚାଲି ଯାଇଥିଲେ ସେକଥା ମୁଁ ଜାଣି ପାରିଲିନି । ମୁଁ ଯେତେବେଳେ ବଲି ବଲି କରି ମୋ ସାର୍ଟରୁ ଧୂଳି ଝାଡ଼ୁଥିବା ବନ୍ଧୁଙ୍କୁ ଅନେଇଲି ସେ କହିଲେ ତମେ ତାଙ୍କ ପାଦ ଧୂଳି ନେବା ଅବସ୍ଥାରେ ଇମିତି ଭାବରେ ତଳେ ପଡ଼ିଗଲ ଯେ ମୁଖ୍ୟମନ୍ତ୍ରୀ ତମ ମୁଣ୍ଡହାରେ ଝୁଲି ପଡ଼ି ଥାଆନ୍ତେ । ସୌଭାଗ୍ୟକୁ ଆମେ ତାଙ୍କୁ ଧରି ପକେଇଲୁ । ମୁଁ ତାଙ୍କୁ ପଚାରିଲି, "କିନ୍ତୁ ମୁଖ୍ୟମନ୍ତ୍ରୀ [illegible]?" ଆଉ କିଛି କହିବା ପୂର୍ବରୁ ସେ କହିଲେ, ମୁଖ୍ୟମନ୍ତ୍ରୀ ତମକୁ ଦେଖି ଭାରି ଖୁସି ହେଲେ ।

ପରେ ପୁଣି ଭାବିଲି, କିନ୍ତୁ ସେଦିନ ମୁଁ ତାଙ୍କ ପାଦ ପାଖରେ ହଠାତ୍ ପଡ଼ିଯିବା ପରେ ଆହୁରି ଅନେକ ସଦସ୍ୟ ତ ତାଙ୍କ ପାଦ ଦୁ'ଟାକୁ ଜାବୁଡ଼ି ଧରି ନିଜ ମୁଣ୍ଡକୁ ସେଇ ପ୍ରବଳ ଭିଡ଼ ଭିତରେ ଜୋର କରି ବାଡ଼େଇଥିଲେ, ତେଣୁ ଏ ପ୍ରକାର ପରିସ୍ଥିତିରେ ସେ ମୋତେ ଠିକ୍ ଭାବେ ମନେ ରଖିଥିବେ ଏଥିରେ ମଧ୍ୟ ମୋର ସନ୍ଦେହ ଜାତ ହେଉଥିଲା ।

ମୁଁ ମୋ ସ୍ତ୍ରୀଙ୍କୁ ପୁଣି ଥରେ ପଚାରିଲି, ତମେ ଠିକ ଜାଣିଚ ମୁଖ୍ୟମନ୍ତ୍ରୀ ନିଜେ ଫୋନ୍ କରିଥିଲେ ।

ସେ କହିଲେ, ମୁଁ କିମିତି ଜାଣିକି କହିବ ? ପୁଣି ମୁଖ୍ୟମନ୍ତ୍ରୀଙ୍କ ନାଁରେ ।

ମୁଁ ନିଜକୁ ଧିକ୍କାର କଲି । ଆଃ, ଏତିକିବେଳକୁ ମୋର ବାଥରୁମ୍ କୁ ଯିବାର ବା କଅଣ ଦରକାର ଥିଲା । କି ଦୁର୍ଭାଗ୍ୟ । ମୋର ମନେ ହେଲି ସେ ଯେମିତି ମୁଖ୍ୟମନ୍ତ୍ରୀ ନ ଥିଲେ । ଥିଲେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଏବଂ ଆସିଥିଲେ ମୋ ଜୀବନର ଅଲିଖିତ ଗୀତ ଗୋବିନ୍ଦର ପଦପୂରଣ କରିବାକୁ । ମୋ ବଦଳରେ ମୋ ସ୍ତ୍ରୀକୁ··· ।

ମୋ ସ୍ତ୍ରୀକୁ ମୁଁ ସେଇ ଜୟଦେବ ଆଖିରେ ଦେଖୁ ଦେଖୁ ସେ ନିଜେ ସ୍ୱୟଂ ଶ୍ରୀକୃଷ୍ଣଙ୍କ ସହିତ କଥା ହେଇଥିବାର ସୌଭାଗ୍ୟ ଅର୍ଜନ କରିଥିବାରୁ ସେଇ ମୁହୂର୍ତ୍ତରେ ମୋର ତାଙ୍କ ପାଦତଳେ ଲୋଟିଯିବାକୁ ଇଚ୍ଛା ହେଉଥିଲା ।

ମୁଁ ଅତ୍ୟନ୍ତ ଭାବ ବିହ୍ୱଳିତ ହୃଦୟରେ ତାଙ୍କୁ ପଚାରିଲି, କୁହ ପଦ୍ମା, ଆଉ ଥରେ କୁହ, ସେ ତୁମକୁ କଅଣ କହିଲେ ? ମୁଁ ଆଉ ଥରେ ମାତ୍ର ଶୁଣିବି ତୁମ ମୁହଁରୁ ।

ସେ ଟିକିଏ ବିରକ୍ତ ହେଲେ ବୋଧେ । କହିଲେ, କହିଲି ପରା ରାତି ଦଶଟାରେ ତୁମେ ଯାଇ ତାଙ୍କୁ ତାଙ୍କ ବାସ ଭବନରେ ଦେଖା କରିବ ।

ରାତି ଦଶଟାରେ ପୁଣି ତାଙ୍କ ବାସଭବନ ପରି ଏକ ନିଷିଦ୍ଧ ଇଲାକାରେ ମୋ ସହିତ ମୁଖ୍ୟମନ୍ତ୍ରୀଙ୍କର କଅଣ କଥା ଥାଇପାରେ ବୋଲି ଚିନ୍ତା କଲି ବେଳକୁ ମୋର ଅନ୍ତରଙ୍ଗ ବନ୍ଧୁ ତଥା ମୁଖ୍ୟ ଇଲେକ୍‌ସନ୍ କ୍ୟାମ୍ପେନର ହୟଗ୍ରୀବ କହିଲେ, ମୁଁ ଜାଣେ । ସେ ଠିଆ ହୋଇପଡ଼ି କହିଲେ ମୁଁ ଅନ୍ଦର ମହଲ କଥା କିଛି କିଛି ଜାଣେ । ବଡ଼ ବିନୟ ଆଖିରେ ମୁଁ ତାଙ୍କୁ ଚାହିଁବାରୁ ସେ ତାଙ୍କ ପାଟିଟା ମୋ କାନ ପାଖକୁ ଆଣି କହିଲେ ଆସନ୍ତା କାଲି ସନ୍ଧ୍ୟାରେ ଏ ମାସର ଦ୍ୱିତୀୟ ଶପଥ ପାଠ ଉତ୍ସବ ଅନୁଷ୍ଠିତ ହେବ । ତା'ପରେ ସେ ଆଉ କଅଣ କଅଣ କହିଲେ ସେ କଥା ମୋତେ ଆଉ ଶୁଣା ଯାଉ ନ ଥିଲା । ମୁଁ କିନ୍ତୁ ତାଙ୍କ କଥାକୁ ପୁରାପୁରି ଏକ ଅବାସ୍ତବ କଥା ବୋଲି ଧରି ନେଇଥିଲି ।

ଏ ଘଟଣା ଘଟିଲାବେଳକୁ ମାନେ ମୁଖ୍ୟମନ୍ତ୍ରୀଙ୍କଠାରୁ ଫୋନ ଆସିଲା ପୂର୍ବରୁ ଆମେ କେତେଜଣ ମାନେ ମୋର ଯୋଉ ବନ୍ଧୁମାନେ ମୋତେ ଇଲେକ୍‌ସନ୍‌ରେ ସବୁ ପ୍ରକାର ସାହାଯ୍ୟ କରିଥିଲେ ସେମାନଙ୍କୁ ନେଇ ଇଲେକ୍‌ସନ୍‌ରେ ହୋଇଥିବା ଖର୍ଚ୍ଚ'ବାର୍ଚ୍ଚ'ର ଗୋଟାଏ ମୋଟାମୋଟି ତାଲିକା ପ୍ରସ୍ତୁତ କରୁଥିଲୁଁ । ସେମାନଙ୍କ ଭିତରୁ ଜଣେ ଆମ କଥା ଶୁଣି କହିଲେ, ସେ ଯେଉଁଥିପାଇଁ ଡକାଇ ଥାଆନ୍ତୁ ନା କାହିଁକି ଆମର ଖୁବ୍ ଶୀଘ୍ର ଏ କାଗଜ ପତ୍ର ସବୁ ପୋଡ଼ି ଦେବା ଉଚିତ ହେବ ଏବଂ ସନ୍ଧ୍ୟା ପୂର୍ବରୁ ନୂଆ କାଗଜ ତିଆରି କରି କମିଶନକୁ ପଠାଇ ଦେବା ଉଚିତ । ଟିକିଏ ରହି ସେ ପୁଣି ଧୀର ଗଳାରେ କହିଲେ, ହୋଇପାରେ ଏଇକଥା ପାଇଁ ସେ ଆପଣଙ୍କୁ ଡକାଇଥିବେ ।

ମୁଁ ଟିକିଏ ଦୁଃଖ କରି କହିଲି, କାହିଁକି ତୁମେ ଏପରି ଖରାପ କଥା ଗୁଡ଼ାକ ଚିନ୍ତା କରୁଛ ସେ ?

॥ ୩ ॥

ସେ କହିଲେ ମୁଁ ଶୁଣିଲି, ମାନେ ଆଜ ଦ'ପହର ନଉଜରେ କୁଆଡ଼େ କହିଲା ଯେ ସୁପ୍ରିମକୋର୍ଟ ସି.ବି.ଆଇକୁ ନିର୍ଦ୍ଦେଶ ଦେଇଛି, ହାୱାଲା କେଶ ଅନୁସନ୍ଧାନ କରି ମାସକ ଭିତରେ ଆମ ଇଲେକ୍‌ସନ ଖର୍ଚ୍ଚରେ ରିପୋର୍ଟ ଦେବାକୁ ।

ମୋ ପାଖରେ ବସିଥିବା ଆଉ ଜଣେ ବନ୍ଧୁ ଡେଇଁପଡ଼ି ଉଠିପଡ଼ିଲେ ଏବଂ କହିଲେ, ମାରି ଗୁଲି । ମୁଁ ଜୋର ଦେଇ କହିବି ଏଥିରେ କାହାରି କେଶାଗ୍ର ମଧ୍ୟ ବନ୍ଦ ହେବ ନାହିଁ । ତା'ପରେ ଠିକ ଖିଙ୍କାରି ମୋତେ ଅନେଇ କହିଲେ, ଏଥିରେ କିଏ ନାହିଁ କହିଲେ ? ହାଇଓ ସମସ୍ତେ ଅଛନ୍ତି । ସମସ୍ତେ ଭାଗ କଥାବାର୍ତ୍ତା ହୋଇ ଏ କାମ କରିଚନ୍ତି । ମାନେ ଦେଶ ସାରା ସମସ୍ତ । କିଏ କଅଣ କରି ପକେଇବ ଆମେ ଦେଖିବାନ ।

ମୁଁ ତାଙ୍କ କଥା ଶୁଣି କହିଲି, ଆମେ ସମସ୍ତେ ମାନେ ଆମେ ଓ ଆମ ବିରୋଧୀ ଦଳ ସମେତ ସମସ୍ତେ ମିଶି ଯେତେବେଳେ ଗୋଟାଏ କାମ କରୁଛୁଁ ସେତେବେଳେ ସେଇଟାକୁ ଅନ୍ୟାୟ ବୋଲି କେମିତି କୁହାଯିବ ? ଗଣତନ୍ତ୍ର ମାନେ ଆଉ କଅଣ ? ତା'ପରେ ଠିକ ରହି ପୁଣି କହିଲି ହୋଇପାରେ ଖୁବ୍ ବେଶୀରେ ଏଇଟା ଆଉ ଗୋଟାଏ 'ସିଷ୍ଟମ ଫେଲ୍ୟୁଅର୍ ।' କିନ୍ତୁ ତାକୁ ବେଆଇନ ବୋଲି କେମିତି କୁହାଯିବ ?

ଏକ୍‌ଜାକ୍‌ଟଲି । ସେଇଟା ତାଠୁ ଆଉ ବେଶୀ କିଛି ହୋଇ ପାରେନା । ଆଉ ତା ଛଡ଼ା ଏଥିରେ ତ 'ଗ୍ରାଇବ' ବୋଲି କିଛି ନାହିଁ । ସେ ସବୁର ନାଁ ଗନ୍ଧ ମଧ୍ୟ ଏଥିରେ ନାହିଁ । ଟଙ୍କାଟା ହାୱାରେ ଉଡ଼ୁଥିଲା ଯିଏ ପାରିଲା ଧରିଲା । ଆଉ ଜଣେ ବନ୍ଧୁ କହିଲେ, ଆଜ୍ଞା ଧରନ୍ତୁ କୋର୍ଟ କିଛି ଗୋଟାଏ ଏଡଭାଇସ ଦେଲା । ସେଥିରେ କଅଣ ସବୁ ସଦସ୍ୟ, ମନ୍ତ୍ରୀ ମୁଖ୍ୟମନ୍ତ୍ରୀ ଓ ଅନ୍ୟମାନଙ୍କୁ ଏକାଥରେ ଆରେଷ୍ଟ କରାଯିବ ? ଆଉ ଯଦି କରାଯାଏ ତେବେ ଆସେମ୍ବ୍ଲି ଓ ପାର୍ଲିଆମେଣ୍ଟ ଆଉ ରହିବ ? ସମଗ୍ର ଆଡମିନଷ୍ଟ୍ରେସନଟା ଧ୍ୱଂସ ହୋଇ ଯିବନି ?

ଆମର ଏମିତିକା ଗୋଟେ ଗରମା ଗରମ ଆଲୋଚନା ଚାଲିଥିଲା ବେଳେ ଟେଲିଫୋନ୍‌ଟା ଆଉ ଥରେ ବାଜି ଉଠିଲା । କ୍ରିଂ କ୍ରିଂ...

ଏଥର ମୁଁ ଦୌଡ଼ି ଗଲି ଫୋନ ପାଖକୁ । ଏ ସୁଯୋଗଟା ଏଥର ମୁଁ ଆଉ ପତ୍ନୀଙ୍କୁ ଦେବାକୁ ଚାହୁଁ ନ ଥିଲି । ଛାତିଟା ପ୍ରବଳ ବେଗରେ କମ୍ପୁଥିଲା ବେଳେ ମୁଁ ରିସିଭର ଉଠେଇ ଖାଲି ମାତ୍ର ଯାଉଥିବା ପାଟିରେ କହିଲି, ସାର୍ ନମସ୍କାର । ମୁଁ ଅଞ୍ଜ କହୁଚି ସାର୍ । ଗଲଥର ମୁଁ ବାଥରୁମ··· । ତା'ପରେ ଟିକଏ ରହି 'ଆଜ୍ଞା' କହି ରିସିଭର ଥୋଇ ଦେଲି ଏବଂ ଶାନ୍ତିରେ ନିଃଶ୍ୱାସ ମାରିଲି । ତା'ପରେ ବଡ଼ ଘର ଦର୍ପରେ ବନ୍ଧୁମାନଙ୍କଠାକୁ ଫେରି ଆସିଲାବେଳକୁ ତିନିଜଣ ଯାକ ଉଠି ଯାଇ ମୋତେ ଦୁଆର ବନ୍ଧରୁ ବଢେଇ ଆଣି ପଚାରିଲେ, କଅଣ ହେଲା ?

ମୁଁ ବଡ଼ ହାଲକା ଭାବରେ କହିଲି, ନାଇଁମ ରଂ ନମ୍ବର ଥିଲା । ସେମାନଙ୍କ ମୁହଁଟା ଫିକା ପଡ଼ିଗଲା ସିନା । କିନ୍ତୁ ଜଣେ କହିଲା ଆପଣ ବ୍ୟସ୍ତ ହୁଅନ୍ତୁନି । ମୁଁ ଠିକ ଜାଣେ, କାଲି ଆଉ ଥରେ ନିଶ୍ଚୟ ଆସିବ । କାହିଁକି ଜାଣିଚନ୍ତି ନା ?

କାହିଁକି ? ମୁଁ ପଚାରିଲି ।

"ସେଇ ଯେ ଆପଣ ସେଦିନ ଅକସ୍ମାତ୍ ତଳେ ପଡ଼ିଗଲେ । ସେଇଟା ହେଉଚି ଅସଲ କଥା ।"

କଅଣ ହେଲା ସେଇଠୁ ? ଆଉ ଜଣେ ପ୍ରଶ୍ନ କଲେ । ଏମିତି ସ୍ୱାଙ୍କ ଦେଖାଦେଖି ଅନେକ ତ ତଳେ ଜାଣିଶୁଣି ପଡ଼ିଯାଇଥିଲେ ।

ପ୍ରଥମ ଜଣକ କହିଲେ, ଧେତ୍ ବୁଝୁଚ ନାହିଁ···ମୁଖ୍ୟମନ୍ତ୍ରୀ କଅଣ ଏତେ ବୋକା ହେଇଛନ୍ତି ଯେ ସେ ବୁଝି ପାରିବେନି କୋଉଟା ଭେଲ ଓ ଭଲ । ଟିକଏ ରହି ସେ ପୁଣି କହିଲେ, ହେ ଏଗୁଡ଼ାକ ଏତେ ତଳକୁ ଖସି ଯାଇ ପାରିଲେ ?

ଆର ଜଣକ କହିଲେ । ମୁଁ ବି ସେଇ କଥା ଭାବୁଛି । ସେଇ ଦିନଠୁ ମୁଖ୍ୟମନ୍ତ୍ରୀଙ୍କ ନଜର ସ୍ୱାଙ୍କଠି ପଡ଼ିଚି ।

ମୁଁ ଟିକଏ ଉଲୁସି ଉଠିଲି । ଏତିକବେଳେ ମୋ ସ୍ତ୍ରୀ ଗୋଟିଏ ଥାଳରେ ଥାଳଏ ରସଗୋଲା ଆଣି ଆମ ସାମନାରେ ଥୋଇ ଦେଲେ ।

ଥାଳିଏ ରସଗୋଲାକୁ ଆମେ ମାତ୍ର ପାଞ୍ଚଜଣ । ମୋର ଡାଇବେଟିସ୍ । ତେଣୁ ମୋତେ ଗୁଡ଼ ଆଉ ସମସ୍ତେ·· ।

ଜଣେ ପାଟିରେ ଏକାଥରେ ଦୁ'ଟା ରସଗୋଲା ପୁରେଇ କହିଲା, ସାର୍ ମୁଁ କହି ଦେଉଛି ଆପଣ ନିଜ ଭିତରେ ଟିକିଏ ଗାମ୍ଭୀର୍ଯ୍ୟ ଆଣନ୍ତୁ । ଏତିକିବେଳେ ନିଜର ଗୋଟେ ଓଜନ ଥିବା ଦରକାର । କାରଣ ମୋତେ ଯାହା ଦେଖାଯାଉଛି ଆପଣଙ୍କୁ ଇଣ୍ଡଷ୍ଟ୍ରି ନଚେତ୍ ଖଣି, ଜଙ୍ଗଲ କିମ୍ବା ଏକ୍ସାଇଜ ମିଳିବ । କାରଣ ଏଥିରେ ମୁଖ୍ୟଙ୍କ ଇଣ୍ଟରେଷ୍ଟ ବେଶି ଏବଂ ଏଗୁଡ଼ିକ ସେ ତାଙ୍କ ପାଖ ଲୋକଙ୍କୁ ହିଁ ଦେବେ ।

ଆଉ ଜଣେ କହିଲା, 'ମୋତେ ବି ସେମିତିକା ଲାଗୁଛି । ଆଉ ଏତିକି ବେଳେ ଆପଣ ଯଦି ଟିକିଏ ହୁସିଆର ନ ହେବେ ତେବେ ପଞ୍ଚାୟତିରାଜ ଛଡ଼ା ଆଉ କିଛି ନୁହେଁ । ବର୍ଷ ଯାକ ବସି ଖଡ଼ା ଗୈବାଉଥିବେ ।"

ଜଣେ ଅଳ୍ପ ହସି କହିଲା, 'ସେତେବେଳେ ସାର ଆମକୁ ଆଉ ମନେ ପକେଇବା ଦରକାର ନାହିଁ ।

ହଠାତ୍ ଟେଲିଫୋନ୍‌ଟା ଆଉ ଥରେ ବାଜି ଉଠିଲା । ଏଥର ମୋତେ ଲାଗିଲା ଫୋନ୍‌ର ଶବ୍ଦଟା ଟିକିଏ ଭିନ୍ନ ପ୍ରକାରର । ମାନେ କ୍ରିଂ କ୍ରିଂ ନ ହୋଇ ଯେମିତି ଗ୍ରିଂ ଗ୍ରିଂ ହେଲପରି ଲାଗିଲା । ମୋତେ ଥରେ କିଏ ଜଣେ କହିଥିଲେ, ମୁଖ୍ୟମନ୍ତ୍ରୀ କିମ୍ବା ସେଇପରି କୌଣସି ଭି.ଭି.ଆଇ.ପି.ଙ୍କ ଠାରୁ ଫୋନ୍ ଆସିଲେ ସେମିତି ଶବ୍ଦ ହୁଏ । ଏ ପ୍ରକାର ଶବ୍ଦ ମୋ କାନରେ ଆଗରୁ କେବେ ପଡ଼ି ନ ଥିଲା । ମୁଁ ପୁଣି ଥରେ ଝପଟି ଗଲି ଫୋନ ପାଖକୁ । ମୁଁ ଯେତେ ଜୋର୍‌ରେ ଯାଇଥାଏଁ ମୋ ଛାତିର ସ୍ପନ୍ଦନ ସେତିକି ଜୋର୍‌ରେ ବଢ଼ି ବଢ଼ି ଯାଇଥାଏ । ରିସିଭର ଧରିବାକୁ ଏଥର ମଧ୍ୟ ମୋ ସ୍ତ୍ରୀ ଭିତରୁ ଦୌଡ଼ି ଆସି ଥାଆନ୍ତି । ମୁଁ ତାଙ୍କ ହାତକୁ ଛୁଆଡ଼ି ଦେଇ କହିଲି "ସାର୍ ନମସ୍କାର, ସାର୍, ମୁଁ ଅଙ୍କ କହୁଛି ସାର୍ ।'

'କୋଉଠି କହିଲେ ସାର୍ ?'

'ହୋଟେଲ ବାଦ୍‌ଶା ?'

'ଘଣ୍ଟା ୧୦ଟାରେ ?'

'ମୋତେ ପଇ ତାଙ୍କ ରେସିଡେନସ୍‌କୁ...'

'ଯାଉ ଠିକ ଅଛି, ମୁଁ ସେଠାକୁ ଯିବ ନାହିଁ ।'

'କଏ କହିଲେ ସାର ?'

'ଓ, ଆପଣ ତା ହେଲେ ତାଙ୍କ ପି.ଏ.ଙ୍କ ଅଫିସ୍‌ରୁ... ?'

'ଠିକ୍ ଅଛି ସାର୍, ମୁଁ ଚାଲିଯିବ ।'

ମୁଁ ଗୋଟାଏ ଭାରିକାନ୍ତ ମୁଣ୍ଡ ନେଇ ବନ୍ଧୁମାନଙ୍କଠାକୁ ଫେରି ଆସିଲି । ବନ୍ଧୁମାନେ ମୋତେ କୁଣ୍ଢେଇ ପକେଇଲେ । ହିପ୍, ହିପ୍ ହୁର୍‌ରେ କହି ସେମାନେ ମୋତେ ଉପରକୁ ଟେକି ଧରିଲେ ।

ମୋ ସ୍ତ୍ରୀ ଘର ଭିତରୁ ଦଉଡ଼ି ଆସି କହିଲେ, ନା ନା ଆପଣମାନେ ତାଙ୍କୁ ସେମିତି ଟେକା ଟେକି କରନ୍ତୁ ନାହିଁ । ଭୋଟ ପ୍ରଚାରବେଳେ ତାଙ୍କ ଉପରେ ଯୋଉ ମାଡ଼ ହୋଇଥିଲା ସେଥିରେ ତାଙ୍କ ମେରୁଦଣ୍ଡ ଜଖମ ହୋଇ ଯାଇଚି । ଜଖମତ ହୋଇନି ବରଂ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଇଚି । ତାଙ୍କର ସେ ଶକ୍ତି ଆଉ ଅଛି କି ?

ତାଙ୍କ ଭିତରୁ ଜଣେ କହିଲା, କିଛି ଚିନ୍ତା ନାହିଁ । ଶପଥ ନେବା ପରେ ଦିନ ଏଇଟାକୁ ଠିକ୍ କରିବା ହେବ ଆମର ପ୍ରଥମ କାର୍ଯ୍ୟକ୍ରମ । ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଥିବା ମେରୁଦଣ୍ଡ ନେଇ ଗୋଟାଏ ମନ୍ତ୍ରୀ ଦେଶର କି କାମ ବା କରି ପାରିବ ।

ଆଉ ଜଣେ କହିଲା, ଶପଥ ନେବା ପରେ ଦିନ ଆପଣ ଆମେରିକା ଯିବାକୁ ପ୍ରସ୍ତୁତ ହୁଅନ୍ତୁ । ସେଠୁ ଦରକାର ପଡ଼ିଲେ ନୂଆ ନୂଆ ମେରୁଦଣ୍ଡଟିଏ ନେଇ ଆସିବେ । ଆଜି ବାଇଗଣ ପରି ସେଗୁଡ଼ା ସେଠି ବଜାରରେ ମିଳୁଚି । ସେ ଗୁଡ଼ାକ ଏତେ ଶକ୍ତ ଯେ କେହି ତାକୁ ହାତୁଡ଼ିରେ ପିଟି ପିଟି ମଧ୍ୟ ଜଖମ କରି ପାରିବନି ।

ମୁଁ କହିଲି ସେଥିରେ ତ ଅନେକ ପଇସା ଖର୍ଚ୍ଚ ହେବ । ଏତେ ପଇସା କ'ଣ ଦରକାର ହେବ ?

ସେ କହିଲେ, ଉବଳ ମାନେ ? କେଉଁ ମନ୍ତ୍ରୀମାନଙ୍କ ନାକରୁ ସିଂଘାଣୀ ବାହାରିଲେ ସିଧା ସେମାନେ ଆମେରିକା ଯାଉଚନ୍ତି ଟ୍ରିଟ୍‌ମେଣ୍ଟ ପାଇଁ । ସେଥର ତ ଜଣେ ମନ୍ତ୍ରୀ ଖାସ ଏଇଥିପାଇଁ ମାସେ କାଳ ସସ୍ତ୍ରୀକ ଆମେରିକାରେ କଟେଇ ଆସିଲେ ।

ଅନ୍ୟମାନେ ହୋ ହୋ ହସି ଉଠିଲେ ।

ମୁଁ କହିଲି ଏ କଥାଟାକୁ ତମେମାନେ ଏମିତି ହାଲ୍‌କା ଭାବରେ ନେବା ଠିକ୍ ନୁହେଁ । ପ୍ରକୃତରେ ଯଦି କାହାର ନାକରୁ ସବୁବେଳେ ସିଂଘାଣୀ ବହେ ତେବେ ସେ ତାକୁ ପୋଛୁବ ନା କାମ କରିବ । ମନ୍ତ୍ରୀଙ୍କର ତ ସବୁବେଳେ ମିଟିଂ । ଆଉ ମିଟିଂରେ ବସିଥିବାବେଳେ ସିଂଘାଣୀଟା··· କେତେ ଖରାପ କଥା କୁହନା ! ତା'ପରେ ଆମର ଏଠି ଯୋଉ ଡାକ୍ତର··· ଛୁଃ ଛୁଃ ! ତାଙ୍କ କଥା ନ କହିବା ଭଲ ।

ତେବେ ସେ ଯାହା ହେଉ, ଶପଥ ଗ୍ରହଣ ଉତ୍ସବକୁ ଯିବାକୁ ମୁଁ ମାନସିକ ଏବଂ ଶାରୀରିକ ଏବଂ ମାନସିକ ସ୍ତରରେ ପ୍ରସ୍ତୁତ ରହିବାକୁ ମୋର ବନ୍ଧୁମାନେ ମୋତେ ଏକ ପ୍ରକାର ବାଧ୍ୟ କଲେ । ଅନେକଗୁଡ଼ିଏ କାରଣରୁ ଏଥର ଶପଥ ଗ୍ରହଣଟା ସେଠି ହେବ ବୋଲି ସେମାନେ ମୋତେ ବୁଝେଇ ଦେଲେ । ପୂର୍ବରୁ କେତେକ ନଜିର ଥିବାର କଥା ମଧ୍ୟ ସେମାନେ ମୋତେ କହିଲେ । ମୋର ମଧ୍ୟ ଧାରଣା ହେଲା ଯେ ଖାଲି ଗୋପନୀୟତା ରକ୍ଷା ପାଇଁ ନୁହେଁ ରାଜଭବନ ଅପେକ୍ଷା ହୋଟେଲ ବାଦଶା ହିଁ ଶପଥ ଗ୍ରହଣ ଉତ୍ସବ ପାଇଁ ଉପଯୁକ୍ତ ସ୍ଥାନ । ମୁଁ ଏଥିପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କର ଚଏସ୍‌କୁ ତାରିଫ କରୁଥିଲି । ତେଣୁ ଏ ଘଟଣାଟା ଯେ ମୋ ପାଇଁ ଏକ ଐତିହାସିକ ଘଟଣା ହେବାକୁ ଯାଉଚି ଏଥିରେ ମୋର ଆଉ ସନ୍ଦେହ ନଥିଲା ।

ମୁଁ ଆଗରୁ ଶୁଣିଥିଲି ହୋଟେଲ ବାଦଶାହଟା ଦୁବାଇର ଜଣେ ବିଖ୍ୟାତ ହୋଟେଲ ବ୍ୟବସାୟୀଙ୍କର । ଖାଲି ଭାରତରେ ନୁହେଁ ପୃଥିବୀର

ଅଧିକାଂଶ ଦେଶରେ ତାଙ୍କର ତାରକା ହୋଟେଲମାନ ଅଛି । ଏଗୁଡ଼ିକ ମୁଖ୍ୟତଃ ଫରେନରମାନଙ୍କ ପାଇଁ । ଏଥିରେ ଭାରତୀୟମାନେ କ୍ୱଚିତ ରହନ୍ତି । ବମ୍ବେ ବମ୍ ବ୍ଲାଷ୍ଟ ବେଳେ ଏଇ ହୋଟେଲରେ କୁଆଡ଼େ ଦାଉଦ ଇବ୍ରାହିମଙ୍କ ଅନେକ ଲୋକ ରହିଥିଲେ । ଠିକ୍ ଏମାନେ ହୋଟେଲ ଛାଡ଼ିବା ପରେ ପରେ ପୁଲିସ ଯାଇ ସେ ହୋଟେଲ ଖାନତଲାସ କରିଥିଲା ବୋଲି ଭାରତର ବହୁ ସମ୍ବାଦ ପତ୍ର, ସରକାର ଜାଣିଶୁଣି ଏପରି କଲେ ବୋଲି ଖୋଲାଖୋଲି ସମାଲୋଚନା କରିଥିଲେ ।

ହୋଟେଲ ସାମନାରେ ମୁଁ କାରରୁ ଓହ୍ଲାଇଲା ବେଳକୁ ଠିକ ରାତି ଦଶଟା । ସାମନାରୁ ହୋଟେଲଟିକୁ ଦେଖୁ ଦେଖୁ ମୋ ଆଖି ଖୋସି ହୋଇଗଲା ।

ଅନେକ ଦିନ ତଳେ ମୁଁ ଥରେ କୋଉ ଗୋଟେ ପିକଚରରେ କେଜାଣି ଜନ୍ ହ୍ୱ ଗୁଓଲ୍‌କୁ ଗୋଟିଏ ବାଥରୁମ ଦୃଶ୍ୟରେ ମୋ ଆଡ଼କୁ ଅଧା ବଙ୍କେଇ ଠିଆ ହୋଇଥିବାର ଦେଖିଥିଲି । ହୋଟେଲ ବାଦ୍‌ଶାକୁ ରାତିରେ ଦେଖିଲେ ମୋର ସେଇ କଥାଟି କେମିତି କେଜାଣି ମନେ ପଡ଼ି ଯାଉଥିଲା । ମୁଁ କରିଡରର ଅପରୂପ ଶୋଭା ସମ୍ଭାର ଏବଂ କାନ୍ଥରେ ଲଟକା ଯାଉଥିବା ବହୁ ସୁନ୍ଦର ସୁନ୍ଦର ଜୀବନ୍ତ ନାରୀ ମୂର୍ତ୍ତିଗୁଡ଼ିକୁ ଦେଖୁ ଦେଖୁ ଧୀରେ ଧୀରେ ଆଗଉଥିଲି । ହଠାତ୍ ମୋ ସାମନାରେ ଗୋଟାଏ ଲାଇଫ୍ ସାଇଜ ଦର୍ପଣ ଥିବାର ଦେଖିଲି ।

ଦର୍ପଣ ଭିତରେ ମୋର 'ମୁଁ'କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଗଲା ତପା ନୂଆ କୋର୍ଟଟା ଯେ ମୋତେ ଏତେ ସୁନ୍ଦର ମାନୁଚି ଏକଥା ମୁଁ ସେଇଠି ଜାଣିଲି । ନୂଆ କରି ପିନ୍ଧିଥିବା ଗାନ୍ଧୀ ଟୋପିଟାରେ ମୋତେ ଟିକିଏ ଅଡୁଆ ଅଡୁଆ ଲାଗୁଥିଲେ ମଧ୍ୟ ମୋର ମନ୍ତ୍ରୀଭିତର ପର୍ସନାଲିଟି ଯେ ଏଥିରେ ଅନେକ ବଢ଼ୁଚି ଏଥିରେ ସନ୍ଦେହ ନଥିଲା । ମୁଁ ଦର୍ପଣ ସାମନାରେ ସେଇଟିକୁ ଆଉଥରେ ଟିକିଏ ସଜାଡ଼ି ନେଉଥିବାବେଳେ ଜଣେ ଅପେକ୍ଷାକୃତ ବୟସ୍କ ବ୍ୟକ୍ତି ମୋ ପଛପଟୁ ଆସି ମୋତେ ପଚାରିଲେ 'ତୁମେ ବୋଧେ ଅଜ୍ଞାନ ଦାସ ?

ମୋତେ ତାଙ୍କୁ ଚିହ୍ନା ଚିହ୍ନା ପରି ଲାଗିଲା । ସେ ଜଣେ ସିନିଅର

ମନ୍ତ୍ରୀ ହେଉଥିବେ ଭାବି ମୁଁ ସଙ୍ଗେ ସଙ୍ଗେ ଦୁଇ ହାତ ଯୋଡ଼ି ତାଙ୍କ ସାମନାରେ ଠିଆ ହେଇ କହିଲି ମୋତେ ଖାଲି 'ଅଙ୍କ' କିମ୍ବା 'ଦାସ' ବୋଲି ସମ୍ବୋଧନ କରନ୍ତୁ ସାର। ମୁଁ ସେଇ ନାମରେ ପରିଚିତ ହେବାକୁ ଚାହେଁ।

ସେ ବୋଧେ ଆଉ କିଛି କହିବାକୁ ଯାଉଥିଲେ। ମୁଁ କିନ୍ତୁ ମୋ କଥାର ଜେର ରଖି କହିଲି, 'ଅଙ୍କଟା ମୋ ବାପାଙ୍କ ପାଖକୁ ଫେରିଯାଉ ସାର। କେମିତି ନାଁ। ସେ ଦେଇଥିଲେ ମୋ ନାଁରେ। ମୋତେ ତେବେ ଖାଲି ଆପଣ 'ଦାସ' ବୋଲି କହିବେ। ଦେଶ ସେବା କରିବାଟାକୁ ଯେତେବେଳେ ଜୀବନର ଗୋଟାଏ ମହାନ ବ୍ରତ ବୋଲି ମାନି ନେଇଛି ସେତେବେଳେ ମୋ ମତରେ ଆମେ ସମସ୍ତଙ୍କର 'ଦାସ' ଏଇ ନାଁଟା ମୋ ପାଇଁ ବେଶି ଏପ୍ରୋପ୍ରିଏଟ୍।'

ସେ ହସି ପକେଇଲେ। ଆଉ ମୁଁ ମଧ୍ୟ।

ତାପରେ ସେ ମୋତେ କହିଲେ, ବେଶ୍ ତାହାହିଁ ହେବ। ତୁମେ ଏଥର ଯାଅ। ମେନ ହଲରେ ସମସ୍ତେ ଅପେକ୍ଷା କରିଛନ୍ତି। ସେ ମୋତେ ମେନ ହଲକୁ ରାସ୍ତା ବତେଇ ଦେଲେ ଏବଂ ନିଜେ ତରତରରେ ବିପରୀତ ଦିଗକୁ ଚାଲି ଗଲେ। ବଣ ଭିତରେ କି ପଡ଼ିଆ ମଝିରେ ସୂର୍ଯ୍ୟ ବୁଡ଼ାଣି ବେଳଟାରେ ବୁଦି ବୁଦିକିଆ କଣ୍ଟାବଣ ଭିତରେ ମେଣ୍ଢା କି ଛେଳି ଛୁଆ ହଜି ଯାଇଥିଲେ ଗୋରୁମଣା ଟୋକା ଯେମିତି ଆତଙ୍କିତ ଚିତ୍ତରେ ଏପଟ ସେପଟ ଅନେଇ ଅନେଇ ଶୀଘ୍ର ଶୀଘ୍ର ଏପାଖ ସେପାଖ ହେଇ ଦେଖୁଥାଏ, ତାଙ୍କ ତରତରିଆ ଚାଲିଟା ମୋତେ ସେମିତି ଲାଗୁଥାଏ।

ମେନ୍ ହଲ ଭିତରକୁ ପଶିଯାଇ ମୁଁ ଦେଖିଲି ହଲଟା ଭର୍ତ୍ତି। ଲୋକ ଗହଗହ। ମୁଁ ଆଶ୍ଚର୍ଯ୍ୟ ହେଲି। ଏଠି ସେ ଶପଥପାଠ ଉତ୍ସବ ଅନୁଷ୍ଠିତ ହେବ, ଏ ବିଷୟରେ ମୋର ସନ୍ଦେହ ଜାତ ହେଲା। ପୁଣି ଭାବିଲି ଯଦି ଶପଥ ପାଠ ଉତ୍ସବ ନୁହେଁ ତେବେ ଏଠି ଆଉ କଅଣ ପାଇଁ ଏତେ ଲୋକ ଜମା ହେଇଛନ୍ତି।

ତେବେ କଅଣ ଆମର ବିଜୟ ଉତ୍ସବ ପାଳନ ପାଇଁ ? ସେମିତି କିଛି ତ ଜଣା ପଡ଼ୁନି। ଯେତେ ଲୋକଙ୍କୁ ମୁଁ ସେଠି ଦେଖିଲି ତାର ଚାରି ଭାଗରୁ ଭାଗେ ଲୋକଙ୍କୁ ମୁଁ ଆଗରୁ ଦେଖିଛି କି ନା ସନ୍ଦେହ। ତେବେ ସେମାନେ

ସମସ୍ତେ ଆମର ଲୋକ ପରି ଜଣା ପଡୁଥିଲେ । ସେମାନଙ୍କ ଭିତରୁ କିଛି ଫିଲ୍ମ ଷ୍ଟାର, ଶିଳ୍ପପତି, ଶାଳବଣ ଠିକାଦାର ମଧ୍ୟ ଥିବାର ଦେଖିଲି । ସେମାନଙ୍କ ଭିତରୁ କେତେକଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ମଧ୍ୟ ଅଛି । ତେବେ ଘଟଣା ଯାହା ହେଉନା କାହିଁକି ଏଇଟା ଯେ ଶପଥ ଗ୍ରହଣ ଉତ୍ସବ ନୁହେଁ ଏ ବିଷୟରେ ମୋର ଆଉ ସନ୍ଦେହ ନଥିଲା । ଏ ବିଷୟରେ ମୁଁ ନିଶ୍ଚିନ୍ତ ହୋଇଯିବା ସଙ୍ଗେ ସଙ୍ଗେ ମୋତେ ମନ୍ତ୍ରୀ ହିସାବରେ ଦେଖିଲେ ଯିଏ ସବୁଠୁ ବେଶି ଖୁସି ହେବ ବୋଲି ଅପେକ୍ଷା କରି ବସିଚି, ସେ କଥା ମନେପଡ଼ିବାରୁ ମୋ ସ୍ତ୍ରୀ ପଦ୍ମାପ୍ରତି ମୋ ଭିତରେ କେମିତି ଗୋଟାଏ ଅଜଣା କୋହ ମୋତେ ଆଚ୍ଛନ୍ନ କରି ପକେଇଲା । ଠିକ୍ ସେତିକିବେଳେ ସେ ଯେ ମୋର ଖଣ୍ଡିତ ମେରୁଦଣ୍ଡର ଜଣେ ସତର୍କ ପ୍ରହରୀ ଏକଥା ମଧ୍ୟ ମୋର ମନେ ପଡ଼ିଗଲା ।

କେହି ଜଣେ ମାଇକ ପାଖକୁ ଉଠି ଆସିଲେ । ସେ ମାଇକରେ କହିଲେ, ବନ୍ଧୁମାନେ ଆପଣମାନେ ସମସ୍ତେ ଧୀର ସ୍ଥିର ହୋଇ ବସନ୍ତୁ । ଆମ ଭିତରୁ ଆଉ କିଛି ସଦସ୍ୟ ଏ ଯାଏ ଆସି ପହଞ୍ଚି ପାରିନାହାନ୍ତି । ସେମାନେ ଆସିଗଲା ମାତ୍ରେ ଆମର ଡିନର ଆରମ୍ଭ ହେବ । ଡିନର ପରେ ଆମର ଅସଲ କାର୍ଯ୍ୟକ୍ରମ ଆରମ୍ଭ ହେବ ।

ମୁଁ ଖୁସି ହେଲି । ଯା ହେଉ କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ଖିଆପିଆର ବ୍ୟବସ୍ଥା ଅଛି । ସେତିକି ଆନନ୍ଦର କଥା ।

ଆଃ ଏଥିରେ ଆଉ ଖୁସି ହେବାର କଅଣ ଅଛି ? ଯେ କୌଣସି କାମ କରିବା ପୂର୍ବରୁ ପ୍ରଥମେ ଖିଆପିଆର ଯୋଜନା ହିଁ ତ ଆମର ଏବର କଲଚର ହୋଇଗଲାଣି । ଏ କଲଚର ତ ଆମେ ଆରମ୍ଭ କରିଛୁଁ । ଠିକାଦାର ମାନେ ତ ସେଇଆ କରନ୍ତି । କାମ ଆରମ୍ଭ ପୂର୍ବରୁ ସବୁଠାରୁ ବେଶି କେତେ ଖାଇ ହେବ ତା'ର ଯୋଜନା ପ୍ରଥମେ ପ୍ରସ୍ତୁତ ହୁଏ । କିନ୍ତୁ ଧୀରେ ଧୀରେ ଏ କଲଚର୍ ମଧ୍ୟ ପୁରୁଣା ହୋଇଗଲାଣି । ମୋଟେ କିଛି ନ କରି ସମଗ୍ରଟାକୁ ପାଟିରେ ପୂରେଇବାର ନୂଆ କଲଚରଟିଏ ଏବେ ଏବେ ମୁଣ୍ଡ ଟେକୁଚି । ମୁଁ କିନ୍ତୁ ଭାବୁଥିଲି ଏତେଟା ସ୍ୱାର୍ଥପର ହେବା ଠିକ ନୁହେଁ ।

ଆମର ଖିଆପିଆ ଯଥା ସମୟରେ ଶେଷ ହେଲା । ଆମେ ପୁଣି ଯୋଇ

ହଲକୁ ଫେରି ଆସିଲୁ ।

ପୁଣି ସେଇ ଭଦ୍ର ଲୋକ ମାଇକ ପାଖକୁ ଆସିଲେ ଏବଂ ଅତି ସଂକ୍ଷେପରେ କହିଲେ ' ଆମର ମୁଖ୍ୟମନ୍ତ୍ରୀ କେତେକ ଜରୁରୀ କାମ ଯୋଗୁଁ ଆସି ପାରିନାହାନ୍ତି । ତେବେ ସେ ଯେଉଁ ବାର୍ତ୍ତା ଆପଣମାନଙ୍କ ପାଇଁ ପଠେଇଚନ୍ତି ତାହା ହେଲା ବର୍ତ୍ତମାନ ଆମ ମନ୍ତ୍ରିମଣ୍ଡଳ ଘୋର ସଙ୍କଟରେ ସମ୍ମୁଖୀନ । ଆମ ଭିତରୁ କେତେକ ସଭ୍ୟ ବିରୋଧୀଦଳଙ୍କ ଦ୍ୱାରା ନିଜର ସମସ୍ତ ନୈତିକତା ବିକ୍ରୟମୂଲ୍ୟରେ କଣା ହୋଇ ଯାଇଚନ୍ତି । ଆମେ ତାଙ୍କୁ ଦଳରୁ ବହିଷ୍କାର କରି ଦେଇଛୁ । ଅନ୍ୟ ଦିଗରେ ସୁଖର କଥା ଯେ କିଛି ସଚେତନ ତଥା ନୀତିବାନ ସଦସ୍ୟ ସ୍ୱତଃ ପ୍ରବୃତ୍ତ ହୋଇ ଆମ ଦଳରେ ଯୋଗ ଦେଇଚନ୍ତି । ମୁଁ ସେମାନଙ୍କୁ ସ୍ୱାଗତ କରୁଚି । ମୁଁ ଆହୁରି ମଧ୍ୟ ଘୋଷଣା କରୁଚି ଯେ କିଛି ସଦସ୍ୟ ଯୋଉମାନେ ଭୁଲ ରାସ୍ତାରେ ଚାଲି ଯାଇଥିଲେ ସେମାନଙ୍କ ଭିତରୁ କିଛି ଏବେ ସେମାନଙ୍କ ଭୁଲ ବୁଝିପାରି ତାଙ୍କ ଘରକୁ ଫେରି ଆସିବା ବାଟରେ ପୁଣି ଥରେ ବିରୋଧୀ ଦଳର ହୀନ ଚକ୍ରାନ୍ତ ଏବଂ ପ୍ରଲୋଭନ ପ୍ରଭାବରେ ହୁଏତ କୋଉଠି ଆତ୍ମଗୋପନ କରିଚନ୍ତି, ନଚେତ୍ ଗୁଣ୍ଡା ଲଗେଇ ସେମାନଙ୍କୁ ଅପହରଣ କରି ନିଆଯାଇଚି ବିରୋଧୀ ଦଳର ଏସବୁ ଜଘନ୍ୟ କାର୍ଯ୍ୟ ଆମର ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ପ୍ରତି ଏକ ଶକ୍ତ ଧକ୍କା । ଆମେ ଦୃଢ଼ ହୃଦୟରେ ଏହାର ମୁକାବିଲା କରିବୁ ।

ଟିକଏ ରହି ସେ ପୁଣି କହିଲେ, ମୋ ହାତରେ ସମୟ ଯଥେଷ୍ଟ କମ । ତେଣୁ ମୁଁ ଚାଲି ଯାଉଚି । ଆପଣମାନେ ଏବେ ନିଜ ନିଜ ରୁମକୁ ଯାଇ ବିଶ୍ରାମ ନିଅନ୍ତୁ । ଏଇଠି ଆପଣମାନଙ୍କ ପାଇଁ ସବୁ ବ୍ୟବସ୍ଥା ହୋଇ ସାରିଚି । ମୋର ମନେ ହେଉଚି ଆପଣମାନଙ୍କୁ ଏଠି ସାତ ଆଠ ଦିନ ରହିବାକୁ ପଡ଼ିପାରେ । ଏଠି ଆପଣଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ପେୟର ବ୍ୟବସ୍ଥା ହୋଇଚି । ଯାହାର ଯାହା ଦରକାର ନିର୍ଦ୍ଦେଶ ଦେଲାମାତ୍ରେ ଆସି ପହଞ୍ଚିବ । ତେବେ ମାତ୍ର ତିନୋଟି ଜିନିଷ ପାଇଁ ଆପଣ ଦୟା କରି ଅନୁରୋଧ କରିବେନି । ସେଗୁଡ଼ିକ ହେଲା ସମ୍ବାଦପତ୍ର, ଟି.ଭି କମ୍ବା ରେଡ଼ିଓ ଏବଂ ଟେଲିଫୋନ୍ । ମୋଟ କଥା ହେଲା ବାହାର ଜଗତ ସହିତ ଆପଣଙ୍କର କିଛି ସମ୍ପର୍କ ରହିବ ନାହିଁ । ତା"ଛଡ଼ା ଆପଣ ଏ ହୋଟେଲ ବାହାରକୁ ମଧ୍ୟ ଯାଇ ପାରିବେନି । ତେବେ ଆପଣଙ୍କ ପରିବାରର ସମ୍ପୂର୍ଣ୍ଣ ନିରାପତ୍ତା ସହିତ ସେମାନଙ୍କର ସମସ୍ତ ଦାୟିତ୍ୱ ମଧ୍ୟ ଆମେ ନେଇ ସାରିଛୁ ।

ସେ ହଲ ଭିତରୁ ବାହାରି ଗଲେ ଏବଂ ଗଲାବେଳେ ହୋଟେଲ ମେନେଜରଙ୍କଠାରୁ ଗୋଟାଏ ଶସ୍ତ ବ୍ଲବ ପେନ୍ଥା ମଧ୍ୟ ସାଥିରେ ନେଇଗଲେ ।

ବର୍ତ୍ତମାନ ଆମେ ଯେ ଗୃହବନ୍ଦୀ ଏକଥା ମୋର ଆଉ ବୁଝିବାକୁ ବାକି ରହିଲାନି । କିନ୍ତୁ ଗୃହବନ୍ଦୀ ହୋଇ ରହିବାକୁ ମୋର ଆପତ୍ତି ନଥିଲା । ଦୀର୍ଘ ସାତ ଆଠ ଦିନ ମୋତେ ଅନ୍ୟ ଅନେକଙ୍କ ସାଥିରେ ଏହି ପ୍ରାସାଦୋପମ ହୋଟେଲରେ ରହିବାର ସୁଯୋଗ ମିଳିଥିବାରୁ ମୋ ଭିତରେ ଏକ ନୂତନ ଉନ୍ମାଦନା ତଥା ରୋମାଞ୍ଚ ସୃଷ୍ଟି ହେଉଥାଏ । ସେକଥା ବର୍ଣ୍ଣିବାକୁ ମୋର ଭାଷା ନ ଥାଏ । ମୁଁ ମନେ ମନେ ମୁଖ୍ୟମନ୍ତ୍ରୀଙ୍କୁ ଆମ ପାଇଁ ଏସବୁ ସ୍ୱର୍ଗ ସୁଖର ବ୍ୟବସ୍ଥା କରି ଦେଇଥିବାରୁ ଆନ୍ତରିକ ଧନ୍ୟବାଦ ଦେଇ ପକାଇଲି । ନିଜ ଅଜାଣତରେ ତାଙ୍କର କୋଟି ପରମାୟୁ ହେଉ ବୋଲି ମଧ୍ୟ ଈଶ୍ୱରଙ୍କଠାରେ ପ୍ରାର୍ଥନା କରି ପକାଇଲି । ଏଠି ସାତ ଆଠ ଦିନ କାହିଁକି ମାତ ଆଠ ମାସ ହେଲେ ମଧ୍ୟ ଆପତ୍ତି ନାହିଁ । କିନ୍ତୁ ଆହା ଏଠି ଯଦି ମୋ ସହିତ ପଦ୍ମା ଥାଆନ୍ତା, ସେ ଥରେ ଜାଣନ୍ତା, ଖାଲି ଜାଣନ୍ତା କାହିଁକି ମୋ ସହିତ ଅନୁଭବ ମଧ୍ୟ କରନ୍ତା ଯେ ମନ୍ତ୍ରୀ କି ଏମ୍.ଏଲ୍.ଏ. ଟିଏ ହେଲେ ଜଣେ କି ପରମ ସୌଭାଗ୍ୟର ଅଧିକାରୀ ହୁଏ । ଯାଃ, ସେଇଟା ହତଭାଗିଆଟାଏ ।

ସେଦିନ ରାତିଟା କେମିତି ଓ କେତେବେଳେ ପାହିଲା ମୁଁ ଜାଣି ପାରିଲିନି । ସମୟ ସେତେବେଳକୁ କେତେ ହେଲାଣି ସେ କଥା ମଧ୍ୟ ମୋତେ ଜଣା ପଡୁ ନ ଥାଏ । ନରମ ଓ ବେଶ ମୁଲାୟମ ବିଛଣାରେ ଶୋଇ ମୁଁ ଯଥା ସମ୍ଭବ ହାତ ଗୋଡ ଦୁଇଆଡ଼କୁ ମେଲେଇ ବିଛଣାର ସମସ୍ତ ସୁଖ ଶୋଷି ନେବାକୁ ଚେଷ୍ଟା କରୁଥିଲି । ଏତିକିବେଳେ ମୋର କାହିଁକି କେଜାଣି ପୁଣି ଥରେ ପଦ୍ମା କଥା ମନେ ପଡ଼ିଲା । ସକାଳୁ ସକାଳୁ ଅଳସ ଭାଙ୍ଗିଲା ବେଳେ ପଦ୍ମା ଏମିତି ମୋର ମନେ ପଡ଼େ । ପଦ୍ମା କଥା ମନେ ପଡ଼ିବାରୁ ମୋର ସକାଳର ଚା' କଥା ମନେ ପଡ଼ିଲା । ହାତ ଘଣ୍ଟାରେ ଦେଖିଲି ଦଶଟା ବାଜିଲାଣି । ଆରେ, ଏଯାଏ ଚା କଅଣ ଦେଇନି । ସତେତ ମୁଁ ଦରଜା ନ ଖୋଲିବା ଯାଏ କିଏ କେମିତି ଭିତରକୁ ଆସନ୍ତା ? ମୋତେ ଡିଷ୍ଟର୍ବ କେମିତି କରନ୍ତା ? ଏ ଦୁଃସାହସ କାହାର ।

ମୁଁ ବିଛଣାରେ ଉଠି ବସିଲି । ବାହାରେ ଘୃପା କଳରୋଳର ଶବ୍ଦ ମୋତେ ଶୁଣାଗଲା । କବାଟ ଖୋଲି ବାହାରକୁ ଆସିଲି । ସେମିତି କିଛି ଦେଖିଲିନି । କିନ୍ତୁ ସାମନା ଲନ୍ ଓ ବଗିଚ୍ଛମାନଙ୍କରେ ମୋର ବନ୍ଧୁମାନେ ଏପାଖ ସେପାଖ ହେଉଥିବାର ଦେଖିଲି । ବଗିଚ୍ଚ ସେ ପାଖରେ ହୋଟେଲର ବଡ଼ାଟ ପାଚେରି । ପାଚେରିଟା ଏତେ ଉଚ୍ଚ ଯେ ସେ ପାଖକୁ ଦେଖିବାର ମୋଟେ ଉପାୟ ନାହିଁ । ତାମାନେ ପାଚେରିର ମଥା ଆକାଶରେ ଲଗିଲି ପରି ଜଣା ପଡ଼ୁଥାଏ । ଗୋଟାଏ ହୋଟେଲର ଏତେ ଉଚ୍ଚ ପାଚେରି କାହିଁକି ହୋଇଛି ମୁଁ ବୁଝି ପାରୁ ନଥାଏ । ସାଧାରଣତଃ କଲକାରଖାନା ମାନଙ୍କରେ କମ୍ବା ଜେଲଖାନାମାନଙ୍କରେ ଏମିତି ଉଚ୍ଚ ପାଚେରି ଥାଏ । ତେବେ ବୋଧେ ହୋଟେଲ ଭିତରେ କଅଣ ହେଉଚି ନ ହେଉଚି ସେକଥା କାହାକୁ ନ ଜଣେଇବାକୁ ଏମିତିକା ପାଚେରି କରାଯାଇଛି । ପାଚେରିଟା ଏତେ ଉଚ୍ଚ ଥିଲେ ମଧ୍ୟ ସେ ପାଖରୁ କଳରୋଳର ଘୃପାସ୍ୱର ଭାସି ଆସୁଥାଏ ସ୍ୱରଟା କିନ୍ତୁ ହୋଟେଲର ଗୃହ ପାଖରୁ ଆସୁଥାଏ ।

କୌତୁହଳ ଘୃପି ନ ପାରି ମୁଁ ବାରଣ୍ଡା ତଳକୁ ଯାଇ ମୋର ଜଣେ ବନ୍ଧୁଙ୍କୁ ପଚାରିଲି, ବାହାରେ ଏ କଳରୋଳ କଅଣ ଓ କାହିଁକି ହେଉଛି ? ସେ ଯାହା କହିଲେ ସେଥିରେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲିନି । ସେ କହିଲେ, କିଛି ସମାଜ ବିରୋଧୀ ଲୋକ ଆମ ବିରୋଧୀଦଳଙ୍କ ପ୍ରରୋଚନାରେ ଆମ ହୋଟେଲକୁ ଘେରାଉ କରିଚନ୍ତି ଏବଂ ସେମାନେ ହୋଟେଲ ଗେଟରେ ତାଲା ପକେଇ ଦେଇଚନ୍ତି । ତାମାନେ ଆମ ହୋଟେଲକୁ ଏବେ ଯିବା ଆସିବା ସମ୍ପୂର୍ଣ୍ଣ ବନ୍ଦ ।

ମୁଁ ଏକଥା ଶୁଣି ହସିଦେଲି । ମୁଁ କହିଲି, ଏ ଲୋକଗୁଡ଼ା ଆମ ମୁଖ୍ୟମନ୍ତ୍ରୀଙ୍କୁ ମୋଟେ ଜାଣି ନାହାନ୍ତି । ସେମାନେ ଏକଥା ମଧ୍ୟ ଜାଣିନଥିବେ ଯେ ମୁଖ୍ୟମନ୍ତ୍ରୀ ନଜେ ହିଁ ଘେରେଇ ମନ୍ତ୍ରୀ । ସେମାନେ ସଂଖ୍ୟାରେ ଯେତେ ହୁଅନ୍ତୁ ନା କାହିଁକି ଗୋଟାଏ ମିନଟ୍‌ରେ ଯେ ପୋଛି ହୋଇଯିବେ ଏ କଥା ଜାଣି ନାହାନ୍ତି ।

ସେ ମୋ ମୁହଁକୁ ହାଁ କରି ଅନେଇ ଥିବାର ଦେଖି ମୁଁ ଉତ୍ସାହିତ ହୋଇ ପୁଣି କହିଲି, ଆପଣ ଜାଣନ୍ତି ଆମ ମୁଖ୍ୟମନ୍ତ୍ରୀଙ୍କ ପଛରେ କାହାର ଆଶୀର୍ବାଦ ଅଛି ?

ଝିକଏ ରହି ମୁଁ ପୁଣି କହିଲି 'ଆପଣମାନେ ପାଞ୍ଚଟିଯାକ ଘର ଖୁବ୍ ଭଲ କରି ଚିହ୍ନି ପାରିବେ।' ମୋ ନିଜ ଖୁସିରେ ମୁଁ ହୋ ହୋ କରି ହସି ଉଠିଲି।

ଏତିକିବେଳେ ଆଉ ଜଣେ ବନ୍ଧୁ ସେ ଆଡୁ ଦୌଡ଼ି ଆସି ଆମକୁ କହିଲେ ଆପଣ ଜାଣନ୍ତି ଲୋକମାନେ ହୋଟେଲକୁ ଆସୁଥିବା ଖାଦ୍ୟ ପଦାର୍ଥର ଯୋଗାଣ ଲାଇନ ମଧ୍ୟ ବନ୍ଦ କରି ଦେଇଛନ୍ତି ? ସେମାନେ ହୋଟେଲକୁ ପାଣି ଓ ବିଜୁଳି ଲାଇନ ମଧ୍ୟ କାଟି ଦେଇଛନ୍ତି।

ଏକଥା ଶୁଣିଲା ପରେ ମୋ ଭିତରେ କୋଟାଏ ହତାଶିଆ ତଥା କରୁଣ ଆର୍ତ୍ତନାଦ ଗୁମୁରି ଉଠିଲା। କିନ୍ତୁ ବନ୍ଧୁ ଜଣକ କହିଲେ ଆପଣ ମାନେ ବ୍ୟସ୍ତ ହୁଅନ୍ତୁ ନାହିଁ। ଧୈର୍ଯ୍ୟ ମଣିଷର ବଡ଼ କଥା। ଧୀରେ ଧୀରେ ସବୁ ଠିକ ହୋଇଯିବ। ମୁଁ କହିଲି ଆପଣ ଠିକ କହୁଛନ୍ତି। ଆମର ଧୈର୍ଯ୍ୟ ଓ ଏକତା ହିଁ ଆମର ମୁଖ୍ୟମନ୍ତ୍ରୀଙ୍କ ହାତମୁଠାକୁ ଟାଣ କରିବ।

ଧୀରେ ଧୀରେ ସମୟ ଗଡ଼ିବାକୁ ଲାଗିଲା। ସକାଳ ଯାଇ ସନ୍ଧ୍ୟା ହେଲା। ଭୋକରେ ମୋ ପେଟ ଆଉଣ୍ଡି ପାଉଣ୍ଡି ହୋଇଯାଉଥାଏ। ଶୋଷରେ ମୋ ତଣ୍ଟି ଶୁଖି ଯାଉଥାଏ। ସନ୍ଧ୍ୟାବେଳକୁ ଆମ ଭିତରେ ଏକ ସାଙ୍ଘାତିକ ରକମ ଅସ୍ଥିରତା ଦେଖାଗଲା। ଆମ ଭିତରୁ ବହୁ ଲୋକ ସେ ମେଘନାଦ ପାଚେରି ଡେଇଁ ବାହାରକୁ ଯିବାକୁ ଚେଷ୍ଟା କଲେଣି। କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ମତେ ହୋଟେଲର ନିରାପତ୍ତା ରକ୍ଷୀମାନେ ପାଚେରି ଭିତର ପଟେ କଡ଼ା ପହରା ଦେଉଥାଆନ୍ତି। ସେମାନେ ଆମକୁ ପାଚେରି ପାଖକୁ ମଧ୍ୟ ଯିବାକୁ ଦେଉ ନଥାଆନ୍ତି।

ସଞ୍ଜ ହୋଇ ମାତ୍ର ଅନ୍ଧାର ହେବା ବେଳକୁ ଆମ ଭିତରୁ କେତେଜଣ ଗୋଟାଏ ଗଛ ଉପରେ ଚଢ଼ି ପାଚେରି ବାହାରେ କେହି ପରିଚିତ ଲୋକ ଥାଇପାରେ କି ନା କିମ୍ବା ମୋଟ ମୋଟି ବାହାରର ଅବସ୍ଥାଟା କଅଣ ଜାଣିବା ପାଇଁ ଚେଷ୍ଟା କରୁଥିଲେ। ଏତିକିବେଳେ ଦୁଇଜଣ ବିଶାଳକାୟ ରକ୍ଷୀ ସେମାନଙ୍କ ମୋଟାମୋଟା ଠେଙ୍ଗା ଧରି ଦୌଡ଼ି ଆସିଲେ ଏବଂ ଠେଙ୍ଗାଟାକୁ ଗଛରେ ଚଢ଼ିଥିବା ଲୋକ ଦେହରେ ଖେଞ୍ଚିଦେବେ ବୋଲି ଦେଖେଇ ବଡ ବଡ କରି କହିଲେ, ଶଳା ତଳକୁ ଆସୁନୁ ନା ଦେଖିବୁ

ଏଇନେ ।' ସେ ସତକୁ ସତ 'ଖୋଞ୍ଜ ଦେଲାକ କଅଣ ଲୋକଟା ଉଳେ ଧୁମ୍ କର ପଡ଼ଲା । ମୋ ଆଖି ବୁଜ ହୋଇଗଲା । ଅନ୍ୟମାନେ ଯେ ଯୁଆଡ଼େ ଥିଲେ ଦୌଡ଼ ପଳାଇଲେ । ଲମ୍ବା ମୁଛଥିବା ଗୋଟାଏ ବହାଗ୍ ହାବିଲ୍‌ଦାର ଦୂରରୁ ତା ରଷୀକୁ ପାଟି କର କହିଲା, "ହାଁ ହାଁ । ମାରୋ ମତ୍ । ଓ ଲୋକ କୋଇ ବଦମାସ ନେହିଁ ହୈ ।' ତାପରେ ତାର ସ୍ୱାଭାବିକ ଘାଘଡ଼ା ଗଳାରେ କହିଲା, 'ଲେକିନ୍ ହାମକୋ ଯୈସେ ଅର୍ଡର ମିଲା ହେ-ହମ୍ ଲୋଗ କରେଙ୍ଗେ କ୍ୟା ?' ଏଇ କଥା କହି ସେମାନେ ପାଚେଶ୍ଟ ଆଉ ଯୋଉମାନେ ଲଙ୍ଗର ପଙ୍ଗର ହୋଇଥିଲେ ସେମାନଙ୍କୁ ଲାଠି ଉଞ୍ଚେଇ ଖେଦ ଆଣିଲେ । ହାବିଲଦାର ପାଟି କଲା, ସବ୍ ଭାଗୋ ହିଆଁ ସେ । ନେହିଁ ତୋ···।

ପ୍ରାଣ ବିକଳରେ ମୁଁ ଓ ଆଉ କେତେଜଣ ହୋଟେଲ ପଛପଟ ଅନ୍ଧାରିଆ ଜାଗାକୁ ଦୌଡ଼ ପଳାଇଲୁ । ସେ ପାଖଟା କିନ୍ତୁ ଆହୁରି ଭୟଙ୍କର ଥିଲା । ଘୁଷ ଛଅଟା ବଡ଼ ବଡ଼ ବାଘ ପରି ଦେଖାଯାଉଥିବା ଆଲସେସିଆନ କୁକୁର ଗର୍ଜନ କରି ଖର ବେଗରେ ଛୁଟି ଆସିଲେ । ସେତେବେଳେ ଆମ ଭିତରୁ କିଏ କୁଆଡ଼େ ଗଲେ ଜଣା ପଡ଼ିଲାନି । ମୁଁ ସେପଟୁ ପଳେଇ ଆସୁଥିବାବେଳେ ଗୋଟାଏ ଫୁଲ କୁଣ୍ଡ ଦେହରେ ଝୁଣ୍ଟି ପଡ଼ ତଳେ ପଡ଼ଗଲି ଏବଂ ସଙ୍ଗେ ସଙ୍ଗେ ଅଚେତ ହୋଇ ପଡ଼ିଲି ।

ମୋର ଚେତା ଫେରିଲାବେଳକୁ ରାତି କେତେ ହେଲାଣି କେଜାଣି । ତେବେ ଆକାଶଟା ଟିକିଏ ସଫା ଦେଖା ଯାଉଥିବାରୁ ମୁଁ ଅନୁମାନ କଲି ବୋଧେ ରାତି ସରି ଆସିବଣି । କିନ୍ତୁ ହୋଟେଲ ଭିତରପଟେ କଟିକଟି ଅନ୍ଧାର । ଭୋକ ଓ ଶୋଷରେ ମୁଁ ଅର୍ଦ୍ଧପ୍ରାଣ । ଚେଷ୍ଟା କଲି ପାନିକର ଡାକିବା ପାଇଁ । କିନ୍ତୁ ପାରିଲିନି । ଦେହରେ ଯିମିତି ଟିକିଏ ବୋଲି ପ୍ରାଣ ନାହିଁ । ହାତମାରି ଜାଣିଲି ମୋ ଦେହରେ ଲୁଗା ନାହିଁ । ଭୋକ ଓ ଶୋଷର ପ୍ରବଳ ଯନ୍ତ୍ରଣାରେ ମୋ ପେଟ ଓ ଗୁନ୍ତି କୋରି ହେଉ ଯାଉଥାଏ । ତେବେ ଅନୁମାନ କଲି ମୁଁ ପଡ଼ିଚି ମୁଲାୟମ ଲନ୍‌ର ଘାସ ଉପରେ । ଯନ୍ତ୍ରଣାରେ ମୁଁ ସେ ଘାସକୁ ଖୁବ ଜୋରରେ ଦୁଇ ହାତରେ ମୁଠେଇ ଧରିଲି । ଅର୍ଦ୍ଧଚେତନ ଅବସ୍ଥାରେ ମୁଁ ତଳକୁ ଖସି ପଡ଼ୁଥାଏ କି ଉପରକୁ ଉଠୁଥାଏ କିଛି ଜଣା ପଡ଼ୁ ନ ଥାଏ । ମୁଁ ଘାସକୁ ଆହୁରି ଜୋରରେ ମୁଠେଇ ଧରି ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ପୁଳାଏ ଛିଣ୍ଡାଇ ଆଣିଲି ଏବଂ ଗୋଟାଏ ଛେଳିପରି ଦୁର୍ବଳ ହୋଇଯାଇଥିବା ଦାନ୍ତ ଭିତରେ ରଖି ଚୋବାଇବାକୁ ଲାଗିଲି ।



(କଥା-୧୯୯୯)

# ॥ ରହାରସେଲ ॥

ମୁଁ ଯେତେ କହିଲେ ବି ସେ ମୋ କଥା ମୋଟେ ମାନିଲେନି । ସେ ମୋତେ ବୁଝେଇବାକୁ ଚେଷ୍ଟା କଲେ, କହିଲେ ଏଥିରେ ଦୁଃଖ କରିବାର କଅଣ ଅଛି ? ଆମେ ତ କିଛି ଅପରାଧ କରିନୁ । କାହାର ସମ୍ପତ୍ତି ଛଡ଼େଇ ନେଇନୁ କି ଚୋରି ଡକେଇତି କରିନୁ, ମଣିଷ ମାରିନୁ କି ଜନାକାଣି କରିନୁ, ଏଥିରେ ଭୟ କରିବାର କଅଣ ଅଛି ? ଲାଜ କରିବାର ମଧ୍ୟ କିଛି ନାହିଁ ।

ମୁଁ ତ ତୁମକୁ କହୁଚି ତୁମେ ମଥା ଉପରକୁ କରି ଚାଲ । ଛାତି ଫୁଲେଇ ରଖ । ମୋଟେ କୌଣସି କଥା ଚିନ୍ତା କରିବାର ଦରକାର ନାହିଁ । ସବୁ କଥା ମୁଁ ବୁଝିବି । ଯାହା କରିବାର କଥା ମୁଁ କରିବି । ମୁଁ ତମ ପଛରେ ଅଛି । ତମେ କାହିଁକି ଡରୁଛ ?

ମୁଁ କହିଲି, ମୁଁ ସେ କଥା ବୁଝୁଚି । ତମ ଉପରେ ମୋର ପୂରା ବିଶ୍ୱାସ ଅଛି । ତମେ ନଥିଲେ ମୁଁ କଅଣ ଏତେ ବାଟ ଆସି ପାରିଥାଆନ୍ତି ? ଏତେ ଉପରକୁ ଉଠି ପାରିଥାଆନ୍ତି ? ମୋର ଆଜି ଯାହା କିଛି ଅଛି, ସେ ସବୁ କେବଳ ତୁମରି ପାଇଁ । ମୁଁ ସେକଥା ଅସ୍ୱୀକାର କରୁଛି ? ମୋର ସମସ୍ତ ଗର୍ବ ଓ ଅହଙ୍କାର କେବଳ ତୁମରି ଲାଗି । ମୁଁ ଏକଥା ବରାବର କହେଁ । କିନ୍ତୁ ତୁମେ ଯେ କହୁଚ ଠିକ ସେମାନେ ଯେତେବେଳେ···ମୁଁ କାନ୍ଦି ପକେଇଲି ।

ସେ ମୋ ଦୁଇ ହାତ ପାପୁଲିକୁ ମୁଠେଇ ଧରିଲେ ଏବଂ ଅତି ବିନୟୀ ହୋଇ କହିଲେ ମୋ ରାଣି, ତୁମକୁ ସେତକ କରିବାକୁ ହେବ । ସେଇ ସେତକରେ ତୁମେ ଦେଖିବ ଆମର ସମସ୍ତ ମାନ ସମ୍ମାନ କେତେ ବଢ଼ିଯିବ । ଆମେ ଯେ ପୂରା ନିର୍ଦ୍ଦୋଷ ସେଇ ସେତକରୁ ସମସ୍ତେ ଜାଣିଯିବେ ।

ମୁଁ ଟିକଏ ଚାଲକୁ ମୁହଁ ପୋଛି ଦେଲି ଏବଂ ତାଙ୍କ କଥାକୁ କପରି ଓ କେଉଁ ପରି ଭାବରେ କାର୍ଯ୍ୟକାରି କରି ପାରିବ, ସେକଥା ଚିନ୍ତା କଲି ବେଳକୁ ସେ ମୋ ପାଖରେ ପଡଥିବା ଫୋନ ଉଠେଇ ଫୋନ କରିବାକୁ ଆରମ୍ଭ କଲେ । ସେ ସେତେବେଳେ ଖୁବ ବ୍ୟସ୍ତ ଓ ଚିନ୍ତିତ ଥିବାର ଜଣା ପଡୁଥିଲି ।

ଏତିକବେଳେ ମୋ ଶଳା ଯେ କି ଆମ ଘରେ ଅନେକ ଦିନୁ ତା'ର ପରିବାର ସହ ରହି ଆସୁଚି ଏବଂ ଗୋଟାଏ ମଲଟି ନେସନାଲ ଏକସ୍‌ପୋର୍ଟ କମ୍ପାନୀରେ ଚାକିରି କରୁଚି, ସେ ଆମ କୋଠରି ଦୁଆର ମୁହଁକୁ ଆସିଲି ଏବଂ କହିଲି, ନାନୀ ସେମାନେ ସେ ବାଥରୁମ ପଛ ପାଖ ଘରଟାକୁ ଦେଖୁଛନ୍ତି ଏବଂ କହିଲେ ଭାଇନାଙ୍କୁ ଡାକ ।

ମୋ ସ୍ତ୍ରୀ ହଠାତ୍ ତାଙ୍କ ବ୍ଲାଉଜ ଭିତରୁ ସ୍ଲେଟ ଡାଏରୀଟିଏ ଓ ତା' ସହିତ ସ୍ଲେଟ କମ୍ପ୍ୟୁଟରଟିଏ ମଧ୍ୟ ବାହାର କଲେ । କିଛି ସମୟ ଦୁଇଟାକୁ ଦେଖିଲେ । ତା'ପରେ କହିଲେ ସେଠି ଛେନା ଅଛି । ତାପରେ ତାଙ୍କ ଭାଇକୁ କହିଲେ, କଅଣ ସ ମାଇଚଆଙ୍କ ଭଳିଆ ହଉଚୁ ? ଏ ସବୁ ସାଧାରଣ କଥାରେ ତ କାହାରି ମୁଣ୍ଡ କାମ କରୁନ ଦେଖୁଛି । ଡାକିଲେ କଅଣ ହେବ, କହିବୁ ସେ ବହୁତ ବ୍ୟସ୍ତ ଅଛନ୍ତି । ଟିକଏ ରହି ସେ କଅଣ ଚିନ୍ତା କଲେ ।

ତାପରେ କହିଲେ, କହିଦେ, ସେ ଚିଫ୍‌ଙ୍କ ସହିତ କଥା ହେଉଛନ୍ତି । ନା ନା କହ 'ସେ ବାଥରୁମରେ ଅଛନ୍ତି । ଏଇ ଅଳ୍ପ ସମୟ ଭିତରେ ଆସିବେ ।

ସେ ଚାଲିଗଲି । ମୋ ସ୍ତ୍ରୀ ପୁଣି ଫୋନ ଉଠେଇଲେ । ମୋତେ ପଚାରିଲେ ସେ ରାଘବ ଗ୍ରୈାଧୁରୀର ନମ୍ବର କେତେ ?

କୋଉ ରାଘବ ଗ୍ରୈାଧୁରୀ ?

ସେ ଟିକଏ ବିରକ୍ତ ହେଲେ । କହିଲେ ଦେଖୁଚି ତମ ମୁଣ୍ଡ ମୋଟେ କାମ କରୁନ । ହଇଓ ତମେ ସେ ପ୍ରେସ ରିପୋର୍ଟରଟାର ଛିନଟା ସାକ

ପିଲାର ବାର୍ଥ ଡେ ଓ ସେମାନଙ୍କ ମେରେଜ ଡେ ତାରିଖ ମଧ୍ୟ ତମ ଜଭେ ଆଗରେ ଥିବ । ଏବେ କହୁଚ କୋଉ ସ୍ୱାବତ ଗ୍ଗୈ ଧୂ ସ ।

ମୁଁ କହି ଦେଲି ।

ସେ ଶଂ କଲେ, କହିଲେ ତମେ ଠିକଏ ଜଲ୍‌ଦ ଆସ । ହଁ ସାଥିରେ ତମର ସେ ଫଟୋଗ୍ରାଫରକୁ ମଧ୍ୟ ଆଣିଥିବ । ତାପରେ ସେ ଅନ୍ୟ କେତେ ଜଣଙ୍କୁ ମଧ୍ୟ ସେମିତି ଫୋନ କରି କହିଲେ ।

ମୁଁ କହିଲି, ତମେ ଏସବୁ କଅଣ କରୁଚ ଉର୍ବଶୀ । ମୋତେ ଏସବୁ ମୋଟେ ଭଲ ଲାଗୁ ନାହିଁ, ମୋର ଭାଇ ବନ୍ଧୁ ପିଲା କୁଟୁମ୍ବ ଏମାନେ ସମସ୍ତେ ଯେତେବେଳେ ଏକଥା ଜାଣିବେ, ସେତେବେଳେ···

ଧେତ୍ ସେଇଥିପାଇଁ ତ କହୁଚ ତମେ ହୋସ୍‌ରେ ନାହଁ । ଏମିତି ଗୋଟିଏ ଜଇକ ହାଟ'କୁ ନେଇ କଏ ରାଜନୀତି କରିଏ ? ଯିଏ ରାଜନୀତିର କ ଖ ଗ ଜାଣି ନାହିଁ, ସେ ପୁଣି ମନ୍ତ୍ରୀ ହେବ ?

ସେ ମୋ ଦେହକୁ ଲାଗି ବସି ପଡ଼ିଲେ ଏବଂ ବାଁ ହାତରେ ମୋ ଗଳାକୁ ବନ୍ଧ ଦେଲେ । କହିଲେ ପ୍ଲିଜ ମୋ କଥା ଠିକଏ ମାନ । ମୁଁ ତମ ଭଲ ପାଇଁ କହୁଚ । ଏଥିରେ ଆମ ମୁଣ୍ଡ ମୋଟେ ତଳକୁ ହେବ ନାହିଁ । ବରଂ ସମ୍ମାନ ବଢ଼ିବ ।

ସେ ମୋ ଦାଢ଼ିରେ ହାତ ଦେଇ ଉପରକୁ ଟେକି ଦେଲେ ଏବଂ କହିଲେ ଆଗ କହିଲ, ଏ ଆସେମ୍ବ୍ଲିର ପରମାୟୁ ଆଉ କେତେ ଦିନ ? ଛଅ ମାସ । ଏଇଆ ତ ? ତୁମେ ଦେଖିବ ତୁମକୁ ସେମାନେ ଟିକଟ ନ ଦେଲେ ମଧ୍ୟ ତମେ ଅନ୍ୟ ଯେ କୌଣସି ଦଳରେ ଯୋଗ ଦେଇ ପାରିବ । କିନ୍ତୁ ନ

ହେଲେ ସ୍ୱାଧୀନ ଭାବରେ ଛୁଡ଼ା ହେଲେ ମଧ୍ୟ ବନ୍ଧୁ ଅଧିକ ବେଗରେ ଚମେ ଛୁଟିବ । କଅଣଟା ହେଇଯିବ ଆମର ? ଆଃ କଏ କରୁନ ସେମିତି ? କାହା ଘର ରେଡ୍ ହେଉନି କହିଲ ? ରାଜନୀତିରେ ଏସବୁ ସାଧାରଣ କଥା । ବରଂ ଏଇଟାକୁ ଗୋଟାଏ ଷ୍ଟେଟସ ସିମ୍ବଲ ହିସାବରେ ନେବା କଥା ।

ମୁଁ ଟିକଏ ହସି ଦେଲି ।

ସେ' ବି ହସିଲେ କହିଲେ, ଆଉ ଟିକଏ । ବାସ୍, ଏବେ ଥାଉ । ଯେମାନେ ଯେତେବେଳେ ତୁମକୁ ଆରେଷ୍ଟ କରି ଗାଡ଼ିକୁ ନେଉଥିବେ, ଠିକ୍ ସେଇ ସେତିକିବେଳେ କେମେରା ଆଡ଼କୁ ଚାହିଁ ସେତିକ କରିଦେବ, ତା ପରର ସବୁ କାମ ମୋର । ତୁମେ ବ୍ୟସ୍ତ ହୁଅନା ।

(ପ୍ରଜାତନ୍ତ୍ର-୧୨।୧୧।୯୮)



# ॥ ରଙ୍ଗ୍ ସିଗ୍ନାଲ ॥

ମନ୍ତ୍ରୀ ମହୋଦୟ ସେଦିନ ସକାଳେ ଖବର କାଗଜଟା ଦେଖି ଚମକି ପଡ଼ିଲେ । ତାଙ୍କ ଆଖି ଆଗରେ ଜୁଳୁଜୁଳିଆ ପୋକ ଦେଖାଗଲା । ମୁଣ୍ଡଟା ଝିନ୍ ଝିନ୍ ହୋଇଗଲା । ରାଜ୍ୟରେ ପୁରା ଦମ୍‌ରେ ମୌସୁମୀ ପ୍ରବାହ ଆସି ଯାଇଥିଲେ ମଧ୍ୟ ଏବଂ ପାଣିପାଗ ଅଫିସ ଗତ କେତେ ଦିନ ହେଲା ଲଗାତର ମଧ୍ୟମରୁ ପ୍ରବଳ ବର୍ଷାର ସମ୍ଭାବନା ଥିବା କଥା ମୁକ୍ତ କଣ୍ଠରେ ଘୋଷଣା କରି ଆସୁଥିଲେ ମଧ୍ୟ ମନ୍ତ୍ରୀଙ୍କୁ ହଠାତ୍ ସନ୍‌ଷ୍ଟ୍ରୋକ୍ ହୋଇଯାଇଥିଲା ପରି ଲାଗିଲା । ସେ ତାଙ୍କ ସ୍ତ୍ରୀଙ୍କୁ ପାଟି କରି ଡାକିଲେ ଉର୍ବଶୀ, ଟିକିଏ ଏଆଡ଼େ ଆସିଲ । ଶୀଘ୍ର ଆସ ।

ଉର୍ବଶୀ ସେତେବେଳ ଯାଏ ବିଛଣା ଛାଡ଼ି ନଥିଲେ । ଗତ ରାତିରେ ଚେମ୍ବର ଅଫ କମର୍ସ ତରଫରୁ ହୋଟେଲ ଅପସରା ଇଣ୍ଟରନେସନେଲରେ ମନ୍ତ୍ରୀଙ୍କୁ 'ମେନ ଅଫ ଦି ଇଅର' ସମ୍ମାନରେ ଭୂଷିତ କରିବା ଉଦ୍ଦେଶ୍ୟରେ ଯେଉଁ ନୈଶ ଭୋଜିର ଆୟୋଜନ ହୋଇଥିଲା ସେଥିରେ ଯୋଗ ଦେଇ ଫେରିଲା ବେଳକୁ ସ୍ୱାଭାବିକ ଭାବେ ଟିକିଏ ଡେରି ହୋଇ ଯାଇଥିଲା । ସେ ବିଛଣାରେ ଶୋଇ ଅଳସ ଭାଙ୍ଗୁଥିଲେ ଏବଂ ଚେମ୍ବରର ସଭାପତି ଶ୍ରୀଯୁକ୍ତ କରୋଡ଼ମଲ ଶାହା ଉର୍ବଶୀଙ୍କର ଆସନ୍ତା ମାସରେ ପଡୁଥିବା ୫୨ତମ ଜନ୍ମ ତିଥିକୁ ସମ୍ପୂର୍ଣ୍ଣ ପବିତ୍ର ତଥା ଆଡ଼ମ୍ବର ଭାବରେ ପାଳନ କରିବାକୁ ଯେଉଁ ଦଶ ପଏଣ୍ଟ କାର୍ଯ୍ୟକ୍ରମର ପ୍ରସ୍ତାବ ଦେଇଛନ୍ତି ତାକୁ ମନେ ମନେ ଭାବୁଥିଲା ବେଳେ ସ୍ୱାମୀଙ୍କ ଶୀଘ୍ର ଆସ ଶବ୍ଦ ଦି'ଟା ତାଙ୍କୁ ଟିକିଏ ବ୍ୟସ୍ତ କରି ପକେଇଲା । ସେ ତାଙ୍କର ବିପର୍ଯ୍ୟସ୍ତ ଶାଢ଼ୀଟାକୁ ଅଭ୍ୟସ୍ତ ହାତରେ ସଜାଡୁ ସଜାଡୁ ଆସି ସ୍ୱାମୀଙ୍କ ପାଖରେ ଠିଆ ହୋଇ ଯାହା ଦେଖିଲେ ସେଥିରେ ସେ ନିଜେ ମଧ୍ୟ ବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ସ୍ୱାମୀ ଏଥର ମନ୍ତ୍ରିମଣ୍ଡଳର ଅଦଳ ବଦଳ ବେଳେ ଶିଳ୍ପ ଦପ୍ତର ପାଇବା ପରଠାରୁ ପରଶ୍ରୀକାତର ତଥା ଅସନ୍ତୁଷ୍ଟ ଲୋକମାନେ ଅନେକ ସମୟରେ ଅନେକ କଥା କହିବାର ଶୁଣା ଗଲାଣି । ବିପକ୍ଷିତ ଗୋଷ୍ଠୀମାନେ ଶିଳ୍ପ ଦପ୍ତର ଛଡ଼େଇ ନେବେ ବୋଲି

ଅନେକ ଥର ଧମକ ମଧ୍ୟ ଦେଲେଣି । କିନ୍ତୁ ତାଙ୍କ ସ୍ୱାମୀ ସେଥିବୁକୁ ମୋଟେ ଖାତିର କରି ନାହାନ୍ତି । ସେତ ଅନେକ ଥର ଦମ୍ଭର ସହିତ କହିଛନ୍ତି ମୁଁ ମୁଖ୍ୟମନ୍ତ୍ରୀଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଭାଜନ ଥିବାଯାଏ ମୋର କେହି କିଛି କରି ପାରିବେନି । ଏପରିକି ଗତ ଥରରେ ପାର୍ଟିରେ ମଧ୍ୟ ସେ ଏକଥା ଦୁଇ ତିନିଥର ହସି ହସି କହିଥିବା କଥା ସମସ୍ତେ ଜାଣନ୍ତି । ତଥାପି ଆଜକାଲି ଯୁଗ ଯାହା ହେଲଣି ସେଥିରେ କାହାକୁ ବିଶ୍ୱାସ ନାହିଁ । ସେ ଯେତେବେଳେ ଦେଖିଲେ ସେ ସ୍ୱାମୀଙ୍କ ପାଖରେ ଏତେ ସମୟ ଧରି ଛିଡ଼ା ହେବାପରେ ମଧ୍ୟ ମେ ତାଙ୍କ ଉପସ୍ଥିତିକୁ ଜାଣିପାରୁ ନାହାନ୍ତି, ସେଣ୍ଟର ଟେବୁଲ ଉପରେ ସକାଳର ଖବର କାଗଜଟା ସେମିତି ପଡ଼ିଚି ଏବଂ ସେ ମଧ୍ୟ କପ୍‌ରୁ ଅଧା ସରି ନାହିଁ, ମନ୍ତ୍ରୀଙ୍କ ଆଖି ଦୁ'ଟା ସିଧା ଯାଇ ଛାତରେ ଲାଗି ରହିଚି ସେ ଟିକିଏ ବିସ୍ମିତ ବିସ୍ଫାରିତ ଆଖିରେ ତାଙ୍କୁ ଦେଖିଲେ ଏବଂ ହତାଶିଆ ସ୍ୱରରେ ପଚାରିଲେ ଆରେ କ'ଣ ହେଲା ? ପୁଣି ବଦଳି ହେଲ ନା କ'ଣ ? ତୁମେ ପରା କାଲି କହୁଥିଲ···?

ମନ୍ତ୍ରୀ ବଡ଼ ଗମ୍ଭୀର ଭାବରେ କହିଲେ ନା, ସେ କଥା ନୁହେଁ ।

ଉର୍ବଶୀ ଆହୁରି ଚିନ୍ତିତ ହୋଇ ପଡ଼ିଲେ । ଆଉ ତେବେ କୋଉ କଥା ? ଭିଜିଲାନ୍ସ କଥା କିଛି ଖବର ପାଇଲ ନା କ'ଣ ?'

ଧେତ୍ ସେମିତି ବାଜେ କଥା ତୁମେ ଚିନ୍ତା କରୁଚ କେମିତି ?

ଉର୍ବଶୀ ଦୀର୍ଘ ନିଃଶ୍ୱାସଟିଏ ପକେଇ ସୋଫାଟିକୁ ତାଙ୍କ ପାଖକୁ ଟାଣି ଆଣି ବସି ପଡ଼ିଲେ ଏବଂ କହିଲେ ତେବେ କହୁନ ଆଉ କୋଉ କଥା ? କାଲି ସନ୍ଧ୍ୟାରେ ପରା ତମେ ଯାଇ ଦୁଇ ମାସର ଆଡଭାନ୍ସ ଦେଇ ଆସିଲ ? କହୁଥିଲ ମୁଖ୍ୟମନ୍ତ୍ରୀ ରାଜ୍ୟସଭା ପାଇଁ ମାଗୁଚନ୍ତି ।

ଓହୋ ବ ପ୍ରାକଟିକାଲ ଉର୍ବଶୀ । ତମେ ଜଣେ ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ ଭଳିଆ କଥାବାର୍ତ୍ତା କରୁଚ ।

ଉର୍ବଶୀ ଲଜେଇ ଗଲେ । ତାଙ୍କ ସ୍ୱାଭିମାନରେ ଆଞ୍ଚ ଆସିଲା । ଜଣେ ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ ଭଳିଆ ଅପମାନ ଜନକ ଶବ୍ଦଗୁଡିକ ତାଙ୍କୁ ସାପ ଚୋଟ ମାରିଲା ଭଳିଆ ଲାଗିଲା । ସେ ସବୁଦିନ ସତ ଯେତେବେଳେ ନୂଆ ମନ୍ତ୍ରୀଙ୍କ

ସ୍ତ୍ରୀ ଥିଲେ ସେତେବେଳେ ମଧ୍ୟ ଏକଥା ଶୁଣି ନଥିଲେ । ତା'ର କାରଣ ତାଙ୍କ ସ୍ୱାମୀ ବି.ଏ. ପଢୁଥିବା ବେଳେ ଲଗାତର ତିନିବର୍ଷ ଠିକ ବାର୍ଷିକ ପରୀକ୍ଷା ବେଳେ କିଛି ନା କିଛି ବାହାନା, ମାନେ ଏଇ ମନେ କରନ୍ତୁ, ବାଡ଼ିକ ମରୁଡ଼ି କମ୍ବା କିଛି ନ'ହେଲେ ବାରମ୍ବାର ପାଓ୍ୱାର ଫେଲ୍ୟୋର ହେଉଥିବା ଦର୍ଶାଇ ପରୀକ୍ଷା ବନ୍ଦ ହେଉ ବୋଲି ଦାବି କରି ଧର୍ମଘଟ କରୁଥିଲେ ଏବଂ ତା'ପରେ ପରୀକ୍ଷା ଦେଉ ନଥିଲେ । ଏମିତି ତିନିବର୍ଷ କାଳପରେ ଚତୁର୍ଥଥର ପାଶ କରିଥିବାରୁ ସମଗ୍ର ୩୭ ଜଣିଆ ମନ୍ତ୍ରିମଣ୍ଡଳରେ ସେ ସବୁଠାରୁ ବେଶି କ୍ୱାଲିଫାଏଡ ମନ୍ତ୍ରୀ ବୋଲି ତାଙ୍କର ବେଶ ନାଁ ଥିଲା । ସବୁଠାରୁ ବେଶି କ୍ୱାଲିଫାଏଡ ମନ୍ତ୍ରୀଙ୍କ ସ୍ତ୍ରୀ ହିସାବରେ ମଧ୍ୟ ତାଙ୍କର ବେଶ ସମ୍ମାନ ଥିଲା । ତା'ର ଅର୍ଥ ଉର୍ବଶୀ ପ୍ରଥମରୁ ହିଁ ଜଣେ ସମ୍ମାନାସ୍ପଦ ମନ୍ତ୍ରୀଙ୍କ ସ୍ତ୍ରୀ ହିସାବରେ ସମ୍ମାନ ପାଇ ଆସିଛନ୍ତି । ଆଜି ତାଙ୍କ ସ୍ୱାମୀ ନିଜେ ଯଦି 'ନ୍ୟୁଆ ମନ୍ତ୍ରୀଙ୍କ ସ୍ତ୍ରୀ' ବୋଲି ଭର୍ତ୍ସନା କରନ୍ତି ତେବେ ସେ କେମିତି ସହନ୍ତେ ? ତେଣୁ ସେ କୃତ୍ରିମ କୋପ ପ୍ରକାଶ କରି କହିଲେ କଅଣ ହେଇଛି ନ କହିଲେ ମୁଁ କେମିତି ଜାଣିବି ? ତମେ କିଛି କହିଲେ ସିନା ମୁଁ ତା'ର ପ୍ରତିକାର ବ୍ୟବସ୍ଥା କରିବି ? ଅତୀତରେ କେତେ ବଡ଼ ବଡ଼ ସମସ୍ୟାରୁ ମୁଁ ତୁମକୁ ମୁକ୍ତ କରେଇ ନାହିଁ କି ?

ମନ୍ତ୍ରୀ ମହୋଦୟ ଏଥର ଖବର କାଗଜଟାକୁ ଉର୍ବଶୀଙ୍କୁ ବଢ଼େଇ ଦେଇ କହିଲେ, ପଢ଼ିଲ ସେ ନ୍ୟୁଜ ଆଇଟମଟାକୁ । ସେଇ ଶେଷ ଧାଡ଼ିଟା ପଢ଼ ।

ଉର୍ବଶୀ ପଢ଼ିଲେ-'ଶିଳ୍ପମନ୍ତ୍ରୀ ବୃନ୍ଦରଙ୍କୁ ଆଶ୍ୱାସନାବାଣୀ ଶୁଣାଇ କହିଲେ ଯେ, ସେମାନଙ୍କ ଅଭାବ ଅସୁବିଧା କଥା ବୁଝିବା ପାଇଁ ଏଣିକି ପ୍ରତି ସୋମବାର ଦିନ ଶିବ ଦର୍ଶନ ପରେ ଦିନ ୧୦ଟାରୁ ୧୧ଟା ଯାଏ ତାଙ୍କ ବାସଭବନ ସଲଗ୍ନ ଅଫିସରେ ସଦସ୍ୟମାନଙ୍କୁ ସାକ୍ଷାତ କରିବେ ।'

କଅଣ ହେଲା ସେଇଠୁ ? ଏଇଟାତ ଠିକ ଅଛି । ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ଯେ କୌଣସି ଲୋକ ଏହାକୁ ସ୍ୱାଗତ କରିବ । ତୁମେ ଲୋକଙ୍କ ଅଭାବ ଅସୁବିଧା କଥା ବୁଝିବନ୍ତି ନାହିଁକି ? ତେବେ ମନ୍ତ୍ରୀ ହେଇ ଆଉ କଅଣ କରନ୍ତ ? ଜେଲ ମନ୍ତ୍ରୀ ଚୋରର ଡକେଇତଙ୍କ ହାରି ଗୁହାରି ଶୁଣିବେନି, ସମାଜ ସେବା ମନ୍ତ୍ରୀ ବେଶ୍ୟାମାନଙ୍କୁ ସପ୍ତାହରେ ଥରେ

ଭେଟିବେନ, ଅବକାଶ ମନ୍ତ୍ରୀ ଭେଟିବାଲ୍ କମ୍ଭା ମନ୍ଦ ବ୍ୟବହାରକାରୀଙ୍କ ଭଲ ମନ୍ଦ କଥା ବୁଝିବେନ ତେବେ ମନ୍ତ୍ରୀ ମାନେ କରିବେ କ'ଣ ? ଗଣତନ୍ତ୍ରର ଉଦ୍ଦେଶ୍ୟ ସଫଳ ହେବନାହିଁ ? ଲୋକଙ୍କ ହାର ଗୁହାରୀ ଶୁଣିବା ତ ଆମର ପ୍ରଥମ କାମ ।

ଆଃ ମୁଁ ସେକଥା କହୁ ନାହିଁ । ମୋର କହିବାର ଅର୍ଥ ହେଲା ସେଇ ବାକ୍ୟଟାରେ ଲୋକମାନେ ଗୋଟାଏ ରଙ୍ଗ୍ ସିଗ୍ନାଲ ପାଇବେ ନାହିଁକି ? କଅଣ ରଙ୍ଗ ସିଗ୍ନାଲ ?

ମଂତ୍ରୀ ଏଥର ତାଙ୍କର ପି.ଏଙ୍କୁ ଫୋନ ଲଗାଇଲେ । କହିଲେ ହଇଓ ତମେ ସେ ନଉଜ ଆଇଟମଟା ପଢ଼ିଲଣି ?

ପଢ଼ିଛି ସାର । ଆପଣଙ୍କ ଦୂରଦୃଷ୍ଟିକୁ ସମସ୍ତେ ତାରିଫ କରୁଛନ୍ତି । ମୋତେ ବହୁ ସାମ୍ବାଦିକ ଫୋନ କରି ଆପଣଙ୍କୁ ଅଭିନନ୍ଦନ ଜଣେଇବାକୁ କହିଚନ୍ତି । ସୁନ୍ଦର ବ୍ୟବସ୍ଥାଟାଏ ଏଥର ହେଲା ।

ସେ କଥା ମୁଁ ବୁଝୁଛି ଯେ, କିନ୍ତୁ ସେଇ ବାକ୍ୟଟା ଗୋଟାଏ ରଙ୍ଗ୍ ସିଗ୍ନାଲ ଲୋକଙ୍କୁ ଦେବ ନାହିଁକି ? ତୁମେ ତ ଜାଣ ମୋତେ କେମିତି ଦଳେ ମୋତେ ସହି ପାରୁ ନାହାଁନ୍ତି ? ଆଉ ସେ ଅର୍ଥମଂତ୍ରୀ ? ମୋ ନାଁ ଶୁଣିଲେ ତାଙ୍କ ନାହି ଡେଉଁଛି । ସେ ତାକୁ ଓଲଟା ଅର୍ଥ କରିବେନ ?

ଓଲଟା ଅର୍ଥ ? ରଂ ସିଗନାଲ ? ମୁଁ ତ କିଛୁ ବୁଝି ପାରୁନ । ଏଇଟା ତ ରାଇଟ ସିଗ୍ନାଲ ସାର । ଦେଖିବେ ଖୋଦ ମୁଖ୍ୟମଂତ୍ରୀ ମଧ୍ୟ ଏଇଟାକୁ ପ୍ରଶଂସା କରିବେ ।

ଆଃ, ତମେ ଭିତର କଥାଟା ମୋତେ ବୁଝୁନ । ଅସଲ କଥାଟା ହେଲା ଚେମ୍ବରର ମେମ୍ବରମାନେ ତାଙ୍କ ସମସ୍ୟାର ସମାଧାନ ପାଇଁ ମୋ ସହିତ ସାକ୍ଷାତ କରିବାକୁ ଆସିଲାବେଳେ ସେମାନେ ହାତରେ ବ୍ରିଫକେଶ

ନେଇ ଆସିବେ ନା ନାହିଁ ? ଆମମାନଙ୍କ ପାଇଁ ବ୍ରିଫ୍‌କେଶ୍‌ ଶବ୍ଦଟା କେଡ଼େ ମାରାତ୍ମକ ସେ କଥାଟା ବୁଝୁଛନ୍ତି ?

ପି.ଏ.ଙ୍କ ଅକଲ ଗୁଡୁମ ହୋଇଗଲା । ତାଙ୍କ ମୁଣ୍ଡରେ ତ ଏତେ କଥା ପଶି ନଥିଲା । ସେ ହତାଶିଆ କଣ୍ଠରେ କହିଲେ-ତେବେ କଅଣ କରିବା ସାର୍ ?

ମଂତ୍ରୀ କହିଲେ ମୋ ମତରେ ତମେ ପେପରକୁ ଗୋଟାଏ କରେକସନ ପଠେଇ ଦିଅ । ସେଥିରେ ଲେଖି ଦିଅ ସେ ସେମାନେ ଆସିଲା ବେଳେ ଖାଲି ହାତରେ ଆସିବେ ।

ପି.ଏ. ନମ୍ରତାର ସହିତ କହିଲେ ମୋ ମତରେ ଏଇଟା ହିଁ ରଙ୍ଗ୍‌ ସିଗ୍‌ନାଲ ହବ ସାର୍ ।

(ପ୍ରଗତିବାଦୀ-୩।୮।୯୮)



## ॥ ପାଞ୍ଚ ॥

ସେଥର ସ୍ୱର୍ଗ ରାଜ୍ୟରେ ଗଣତନ୍ତ୍ର ପ୍ରତିଷ୍ଠିତ ହେଲା ପରେ ପ୍ରଥମ କରି ଯୋଉ ମନ୍ତ୍ରିମଣ୍ଡଳଟି ଗଠନ କରାଗଲା ସେଥି ପାଇଁ ତାର ଅଂଶୀଦାର ମାନଙ୍କୁ କମ୍ କୁସ୍ତି କସରତ କରିବାକୁ ପଡ଼ି ନ ଥିଲା । ବହୁ ଆଲୋଚନା, ବିଚାର ବିମର୍ଷ, ଯୁକ୍ତି ତର୍କ, ଟଣା ଓଟରା, ଖରିଦ ବିକ୍ରି ଏବଂ ଅଦଳ ବଦଳ ପରେ ମଧ୍ୟ ଯେତେବେଳେ ଧାର୍ଯ୍ୟ ଏକ ମାସ ସମୟ ଭିତରେ ଅଂଶୀଦାର ଦଳମାନେ ତାଙ୍କ ପ୍ରତିନିଧି ବାଛି ପାରିଲେନି କି ମିଳିତ ଦଳର ମୁଖ୍ୟଙ୍କ ଗ୍ରହଣ ଯୋଗ୍ୟ ହେଲା ନାହିଁ ସେତେବେଳେ ଶେଷ ଦିନ ରାତି ୧୧.୫୫ ମିନିଟ୍‌ରେ ସର୍ବଦଳୀୟ ନେତା ଘୋଷଣା କଲେ କି ସେମାନେ ଏକ ସର୍ବବାଦୀ ସମ୍ମତ ସିଦ୍ଧାନ୍ତରେ ଉପନୀତ ହୋଇଚନ୍ତି । ଏହି ସିଦ୍ଧାନ୍ତ ଅନୁଯାଇ ଏକ ସାତ ଜଣିଆ ଅସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେବ ଏବଂ ଏହା ସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେବା ଯାଏ କାର୍ଯ୍ୟ କରିବ । ସେ ଏକଥା ମଧ୍ୟ ଘୋଷଣା କଲେ ଯେ ସ୍ୱର୍ଗରାଜ୍ୟର ନୂତନ ସମ୍ବିଧାନ ପ୍ରଣିତ ହେବା ଯାଏ ଭାରତର ପ୍ରଚଳିତ ରୀତି ନିୟମକୁ ସେମାନେ ଗ୍ରହଣ କରି ନେବେ । ତା'ର କାରଣ ଦେବଭୂମି ଭାରତ ଅନେକ ଦୃଷ୍ଟିରୁ ସ୍ୱର୍ଗ ରାଜ୍ୟର ନିକଟତର । ବାସ୍, ଏତିକରେ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କରିଗଲେ । ଶପଥ ଗ୍ରହଣ ଦିନ ହିଁ ସେମାନଙ୍କର ମନ୍ତ୍ରିମଣ୍ଡଳର ପ୍ରଥମ ବୈଠକ ଅନୁଷ୍ଠିତ ହୋଇ ସେଥିରେ ଗୋଟିଏ କମନ୍ ମିନିମମ୍ ପ୍ରୋଗ୍ରାମ୍ ବିଷୟରେ ଆଲୋଚନା ହେଲା ।

ଆଲୋଚନା ଆରମ୍ଭ କରି ଦଳର ଦୁଇ ନମ୍ବର ଭାଗୀଦାର କହିଲେ ପ୍ରଥମେ ଆମ ରାଜ୍ୟର ରାସ୍ତାଗୁଡ଼ିକ ଆମର ମହାନ ଜନନେତାମାନଙ୍କ ନାଁରେ ନାମିତ କରିବା ବିଷୟରେ ଆଲୋଚନା ହେଉ । ସେ କହିଲେ ଆମ ନିର୍ବାଚନ ପ୍ରତିଶ୍ରୁତିକୁ ଆମେ ପ୍ରଥମେ ଆଲୋଚନା କରିବାକୁ ଚାହୁଁ । ଅନ୍ୟମାନେ ଏଥିରେ ରାଜି ହେଲେ । ସେମାନେ କହିଲେ ଆମେ ଏ

ପ୍ରସ୍ତାବକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଁ । ତାର କାରଣ ଦେଶ ସେବାର ତାଲିକାରେ ପୂଜ୍ୟ ପୂଜାର ପବିତ୍ର ପରମ୍ପରାକୁ ଆମେ ପଛକୁ ରଖିବାକୁ ଚାହୁଁନା ।

ଦଳର ମୁଖ୍ୟ ଆଉ ମନା କରି ପାରିଲେନି । ପ୍ରସ୍ତାବ ଗୃହୀତ ହୋଇ ସେ ଦିନର କାର୍ଯ୍ୟକ୍ରମ ସେଇଠି ଶେଷ ହେଲା । ସେ ପ୍ରସ୍ତାବରେ ଏକଥା ମଧ୍ୟ ଥିଲା ଯେ ରାଜ୍ୟର ସମସ୍ତ ରାସ୍ତା, ଗଳି ଓ ଛକ ସବୁକୁ ଦେଶର ମୃତ ବା ଜୀବିତ ମହାନ ନେତାମାନଙ୍କ ନାମରେ ନାମିତ କରାଯିବ ଏବଂ ଏସବୁ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ଏକ ସ୍ୱତନ୍ତ୍ର ଡିରେକ୍ଟୋରେଟ୍ ଖୋଲାଯିବ ।

କିନ୍ତୁ କି ଆଶ୍ଚର୍ଯ୍ୟ, ଡିରେକ୍ଟୋରେଟ ଖୋଲାଯିବାର ମାସ ଦିନକ ପରେ ଏତେ ନାଁ । ସବୁ ଆସି ପହଞ୍ଚିଲା ଯେ ହିସାବ କରି ଦେଖିଲାବେଳକୁ ତାର ଅର୍ଦ୍ଧେକ ସଂଖ୍ୟକ ରାସ୍ତା ମଧ୍ୟ ରାଜ୍ୟରେ ନାହିଁ । ସରକାର ବଡ଼ ଅଡୁଆରେ ପଡ଼ିଲେ । ସମସ୍ତଙ୍କୁ ତ ସନ୍ତୁଷ୍ଟ କରିବାକୁ ପଡ଼ିବ । ଗୋଟିଏ ସଂଖ୍ୟାଧିକ୍ୟ ଗଣତନ୍ତ୍ରରେ ତାହାହିଁ ମୂଳମନ୍ତ୍ର । ଯିଏ ଯାହା ଚାହୁଁଛି ତାକୁ ତାହା ଦିଆଯାଉ । କିନ୍ତୁ ଏ ଆଡ଼େ ସରକାରଙ୍କ ଆର୍ଥିକ ଅବସ୍ଥା ଏତେ ଖରାପ ଥିଲା ଯେ ସେତେବେଳେ ନୂଆ ରାସ୍ତା ତିଆରି କରିବା ତ ଦୂରର କଥା ପୁରୁଣା ରାସ୍ତାର ମରାମତି ମଧ୍ୟ ହୋଇ ପାରୁ ନ ଥିଲା ।

ବିଭାଗୀୟ ମୁଖ୍ୟ ବଡ଼ ଅଡୁଆରେ ପଡ଼ିଲେ । ସେ ନିଜେ କିଛି ସିଦ୍ଧାନ୍ତ ନେଇ ନ ପାରି ଫାଇଲଟିକୁ ଚିଫ୍ ଙ୍କଠାକୁ ପଠାଇ ଦେଲେ । ଚିଫ୍ ସେଥିରେ ଆଦେଶ ଦେଲେ ଯେ ଗୋଟିଏ ରାସ୍ତାକୁ ଦୁଇ ବା ଆବଶ୍ୟକ ହେଲେ ତିନି ମହାନ ନେତାଙ୍କ ନାମରେ ନାମିତ କରାଯାଉ । କଥାଟାକୁ ସ୍ପଷ୍ଟ କରିବାକୁ ଯାଇ ସେ ବିଭାଗୀୟ ମୁଖ୍ୟଙ୍କୁ ଡାକି ଏ ସମ୍ପର୍କରେ ସରକାରଙ୍କ ମତ ବିଷୟରେ ତାଙ୍କୁ ଭଲ ଭାବରେ ବୁଝେଇ ଦେଲେ ।

କିନ୍ତୁ ଅଂଶୀଦାର ନେତାମାନେ ତାକୁ ଗ୍ରହଣ କଲେ ନାହିଁ । ସେମାନେ କହିଲେ ଏହା କିପରି ସମ୍ଭବ । ଗୋଟିଏ ରାସ୍ତାକୁ ଦୁଇ ନେତାଙ୍କ ନାମରେ ନାମିତ କଲେ ତାହା କେଉଁ ନେତାଙ୍କ ମତ ଓ ଆଦର୍ଶକୁ ପ୍ରଜ୍ଜ୍ୱଳିତ କରିବ ?

ସରକାରୀ ମୁଖପାତ୍ର ସେ ଯୁକ୍ତିର ଖଣ୍ଡନ କଲେ । ସେ କହିଲେ ଏହା କୌଣସି ନୀତି ଓ ଆଦର୍ଶରେ ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । ଏପରି ନାମକରଣ ଆମ ପରମ୍ପରାରେ ଅଛି । ଯୁକ୍ତିକୁ ସରଳ କରିବାକୁ ଯାଇ ସେ କହିଲେ, ଯଦି ଗୋଟିଏ ଟ୍ରେନ୍‌କୁ କୋଣାର୍କ ଏକ୍ସପ୍ରେସ୍ ଓ ଚିଲିକା ଏକ୍ସପ୍ରେସ୍ ବୋଲି ଦୁଇଟି ନାମରେ ନାମିତ କରାଯାଇ ପାରେ ତେବେ ଗୋଟିଏ ରାସ୍ତାକୁ ଦୁଇ ନେତାଙ୍କ ନାମରେ ନାମିତ କଲେ କ୍ଷତି କଅଣ ? ସେ କହିଲେ, ରାଜଧାନୀର ଜନପଥକୁ ପ୍ରଥମ ଥର ପାଇଁ ଆମ ରାଜ୍ୟର ଦୁଇ ମହାନ ନେତାଙ୍କ ନାମରେ ନାମିତ କରାଯିବ । ମହା ସମାରୋହରେ ଏହି ନୂତନ ନାମ କରଣକୁ ଆସନ୍ତା ମାସ ପନ୍ଦର ତାରିଖରେ ଉଦ୍‌ଘାଟନ କରାଯିବ ବୋଲି ସ୍ଥିର ହୋଇ ସାରିଛି ।

ନେତାମାନେ ସେତେବେଳେ ପଚାରିଲେ ସେ ମହାନ ନେତାଙ୍କ ନାମ କଅଣ ?

ମୁଖପାତ୍ର କହିଲେ, ଆମେ ପ୍ରଥମେ ଆମର ମୁଖ୍ୟ ରାସ୍ତାଟିକୁ ଆମର ଅତ୍ୟନ୍ତ ଜନପ୍ରିୟ ନେତା ରାମ ଓ ରାବଣଙ୍କ ନାମରେ ନାମିତ କରିବୁ ।

ନେତାମାନେ ତାର ପ୍ରତିବାଦ କଲେ । ସେମାନେ କହିଲେ ଭୁବନେଶ୍ୱରରୁ ବମ୍ବେ ରେଳରାସ୍ତା ସବୁଠି ସମାନ ଚଉଡ଼ା ବିଶିଷ୍ଟ ଥିଲା ବେଳେ ରାଜଧାନୀର ଜନପଥ ସେପରି ନୁହେଁ ।

ସରକାରୀ ମୁଖପାତ୍ର କହିଲେ, ତେବେ ଠିକ୍ ଅଛି । ସମସ୍ତଙ୍କୁ ସମାନ ସୁବିଧା ଦେବା ଆମର ଉଦ୍ଦେଶ୍ୟ । ତେଣୁ ରାସ୍ତାଟିକୁ ପ୍ରଥମ ଛଅ ମାସ ରାମ ରାବଣ ରୋଡ଼ ଏବଂ ତା ପର ଛଅ ମାସ ରାବଣ-ରାମ ରୋଡ଼ ହିସାବରେ ନାମିତ ହେବ ।

ଏକଥାରେ ଅବଶ୍ୟ ନେତାମାନଙ୍କର ଆପତ୍ତି ରହିଲାନି । କିନ୍ତୁ ସେମାନେ କହିଲେ ଆମ ନେତା "ରାମ" ଜଣେ ବିଚକ୍ଷଣ ରାଜନୀତିଜ୍ଞ, ଯୋଦ୍ଧା, ପ୍ରଜା ବତ୍ସଳ ତଥା ଗଣତନ୍ତ୍ରର ତ୍ରାଣ କର୍ତ୍ତା । ତାଙ୍କ ନାମ ସହିତ 'ରାବଣ' ପରି ଜଣେ ମସଲମେନ୍ ବା ମଫିଆ ଯେ କି ଆଜଯାଏ ଗଣତାନ୍ତ୍ରିକ ବିଚାର ଧାରାରେ ମୋଟେ ବିଶ୍ୱାସ ରଖି ନାହାନ୍ତି ତାଙ୍କ ନାଁକୁ ଯୋଡ଼

ସେ କହିଲା ମୁଁ ମାତ୍ର ଘଣ୍ଟାକ ଭିତରେ ହିଁ କହିଦେବ ।

କେମିତି ?

ଧ୍ୟାନ ବଳରେ । ମୁଁ ଜଣେ ସାଧକ । ମୁଁ ଏପରି ଅନେକ ସମସ୍ୟାର ସମାଧାନ କରିଛି । ସବୁଥାନା ଅଫିସର ମୋତେ ଜାଣନ୍ତି । ସେମାନଙ୍କୁ ଫୋନ କରି ପଚାରନ୍ତୁ ।

ସମସ୍ତଙ୍କ ଆଖି ଖୋସି ହୋଇଗଲା ।

ମୁଁ ଧ୍ୟାନ ବଳରେ ସବୁ ଜାଣି ପାରେ । ମୋ ପାଖରେ ଗୋଟିଏ କାଉଁରି ହାଡ଼ ଅଛି । ଧ୍ୟାନରେ ରହି ମନ୍ତ୍ରୋଚ୍ଚାରଣ କଲେ ସେ ହାଡ଼ ମୋତେ ସବୁ କହିଦିଏ । ଦେଖିବେ ?

ସେ ହାଡ଼ ଖଣ୍ଡେ ପକେଟରୁ କାଢ଼ି ରଖିଲା ଏବଂ ଆଖି ବୁଜି କହିଲା 'ଓଁ' । ହାଡ଼ଟି ଟଳମଳ ହେଲା । ସେ ସେଇଟିକୁ ମୁଠେଇ ଧରି କହିଲା, ଏବେ ଚିଫ୍ ସାହେବଙ୍କ ପକେଟରେ ୩ ଶହ ଟଙ୍କା ଅଛି । ସାର୍ ଠିକ ନା ?

ସାହେବ ହସିଲେ ଏବଂ କହିଲେ ଠିକ୍ ସମସ୍ତେ ଆଚମ୍ବିତ ହେଲେ । ସେତେବେଳେ ସେମାନେ ମନେ ମନେ ଭାବୁଥିଲେ ଧ୍ୟାନ ବଳରେ ସବୁ ଜାଣୁଥିବା ଲୋକଟିକୁ ଅଫିସରେ 'ଅର୍ଡ଼ର୍ଲି' କରି ରଖିବା ନିରାପଦ ନୁହେଁ । ଆମର ଗୁପ୍ତ କଥା ସବୁ ନିଶ୍ଚୟ ଇଏ ଜାଣି ପାରିବ ।

ଚିଫ୍ କହୁ ନଥିଲା । ସେ କହିଲେ ସେ ଯଦି କହି ପାରିବ କହୁଛ, ତେବେ କ୍ଷତି କଅଣ ? ଥରେ ସାହାଯ୍ୟ ନିଆଯାଉ । ସମସ୍ତେ ମୁଣ୍ଡ ଟାଙ୍ଗାରିଲେ ।

ଅର୍ଦ୍ଦଳୀ ସଙ୍ଗେ ସଙ୍ଗେ ବାହାରକୁ ଯାଇ ଗେରୁଆ ବସ୍ତ୍ର ଖଣ୍ଡେ ପିନ୍ଧି ଆସିଲା ଏବଂ ତଳେ ପଦ୍ମାସନରେ ବସି ପଡ଼ିଲା । ସେ ହାଡ଼ଟିକୁ ଧରି କହିଲା, ମୁଁ ଧ୍ୟାନରେ ଥାଇ ଓଁ ପଢ଼ିଲେ ମୋତେ ସମସ୍ତେ ଫଲୋ କରିବେ ଏତକ କହି ସେ ଧ୍ୟାନ ମଗ୍ନ ହୋଇଗଲା ।

ସମସ୍ତେ ତାଙ୍କୁ ଘେରି ଠିଆ ହୋଇ ଥାଆନ୍ତି । କେତେବେଳେ ସେ ଉଠିବ । ତା' ପଛେ ପଛେ ସେମାନେ ଯିବେ । ତାଙ୍କ ଭିତରୁ ଜଣେ କବାଟଟିକୁ ଅଧା ଖୋଲି ଠିଆ ହେଲେ ।

ଧୀରେ ଧୀରେ ସେ ଉଠିଲା । ତା'ର ସମଗ୍ର ଦେହ ବରଡ଼ା ପତ୍ର ପରି ଥରୁ ଥାଏ । ଅନ୍ୟମାନେ କଅଣ କରିବେ ବୁଝି ପାରୁ ନ ଥାଆନ୍ତି । ହଠାତ୍ ସେ କଇଁ କଇଁ କାନ୍ଦିବାକୁ ଆରମ୍ଭ କଲା ।

ଅନ୍ୟମାନେ ଆଶ୍ଚର୍ଯ୍ୟ ହେଲେ ।

କାନ୍ଦି କାନ୍ଦି ସେ କହିଲା, ସାର ପାଇଛି, ସବୁ ପାଇଛି ।

କହ, ନାଁ କହ । ଝଟ୍ ଗୋଟାଏ ପେନ୍ସିଲ୍‌ରେ ଲେଖିବାକୁ ପ୍ରସ୍ତୁତ ହେଲେ ।

କାନ୍ଦି କାନ୍ଦି ସେ କହିଲା, କହି ପାରିବନି ସାର । ସେ ନାଁ ସବୁ କହି ପାରିବନି । ମୋ ଗୃହକର ଗୃହଳିପିବ ।

ପ୍ରଜାତନ୍ତ୍ର-୨୦।୮।୯୯



# ॥ ବଗୁଡ଼ ଓ ବାତ୍ୟା ॥

ବଗୁଡ଼ମାନେ ଯେତେବେଳେ ଜାଣିଲେ ଯେ ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଳୟଙ୍କରୀ ବାତ୍ୟା ଯୋଗୁଁ ସମଗ୍ର ଜନପଦ ଧ୍ୱଂସ ହୋଇଯାଇଛି ଏବଂ ହଜାର ହଜାର ମଣିଷ ରାସ୍ତା କଡ଼ରେ ପଡ଼ି କଲବଲ ହେଉଛନ୍ତି ସେତେବେଳେ ସେମାନେ ଦୁଃଖରେ ଭାଙ୍ଗି ପଡ଼ିଲେ । ସେମାନେ ଏକଥା ମଧ୍ୟ ଭାବିଲେ ଯେ ହଜାର ହଜାର ଲୋକ ମରିଥିବାବେଳେ ଏବଂ ସେମାନଙ୍କ ଘରଦ୍ୱାର ସମ୍ପୂର୍ଣ୍ଣ ଉଜୁଡ଼ି ଯାଇଥିବାବେଳେ ସେ ଅଞ୍ଚଳରେ ବାସ କରୁଥିବା ଅସହାୟ ବଗୁଡ଼ମାନେ ମଧ୍ୟ ଦୟନୀୟ ଅବସ୍ଥାରେ ମୃତ୍ୟୁବରଣ କରିଥିବେ କିମ୍ବା ବଞ୍ଚିଥିଲେ ମଧ୍ୟ ଅନେକ କଷ୍ଟ ପାଉଥିବେ । ସେଠାକାର ବଗୁଡ଼ ପିଲାମାନେ ହୁଏତ ମୂଳପୋଛ ହୋଇଯାଇଥିବେ । ତାର ଅନ୍ୟ ଅର୍ଥ ହେଲା ଆଗାମୀ ଶତାବ୍ଦୀରେ ବଗୁଡ଼ଙ୍କ ସଂଖ୍ୟା ଅନେକ କମିଯିବ । ଏହା ମଣିଷ ସମାଜ ପାଇଁ ମଧ୍ୟ ଶୁଭ ସୂଚନା ନୁହେଁ । ତାର କାରଣ କୋଉ ଅନାଦି ଯୁଗରୁ ମଣିଷ ଓ ବଗୁଡ଼ ଭିତରେ ଗୋଟାଏ ଆତ୍ମୀୟ ସମ୍ପର୍କ ରହିଆସିଛି । ସେମାନେ ପରସ୍ପର ଉପରେ ନିର୍ଭରଶୀଳ ।

ତେବେ ବଗୁଡ଼ମାନେ ନିଜ ବଂଶ କମିଆସୁଛି ଶୁଣି ଯେତେ ଚିନ୍ତିତ ନଥିଲେ, ତା ଅପେକ୍ଷା ବେଶୀ ଚିନ୍ତିତ ଥିଲେ ମଣିଷମାନଙ୍କ ଦୁଃଖ ଦୁର୍ଦ୍ଦଶା କଥା ଶୁଣି । ସେମାନେ ଭାବନ୍ତି ମଣିଷମାନଙ୍କ ଦୁଃଖ ସେମାନଙ୍କ ଦୁଃଖ । ସେମାନେ ସବୁବେଳେ ମଣିଷମାନଙ୍କୁ ସେମାନଙ୍କର ଏକାନ୍ତ ଆପଣାର ବୋଲି ମନେ କରନ୍ତି । ତେଣୁ ବାତ୍ୟାଜନିତ ମଣିଷଙ୍କ ଦୁଃଖ ସେମାନଙ୍କୁ ମ୍ରିୟମାଣ କରି ପକାଇଲା ।

ମଣିଷମାନଙ୍କର ଏ ଚରମ ଦୁର୍ଦ୍ଦିନରେ କଅଣ କରାଯାଇପାରେ ସେ ବିଷୟରେ ବିଚାର ବିମର୍ଷ ପାଇଁ ସେମାନେ ଗୋଟାଏ ସଭାର ଆୟୋଜନ କଲେ । ଗୋଟିଏ ମୋଟା ସୋଟା ବଗୁଡ଼ ଏଥିରେ ସଭାପତିତ୍ୱ କଲା । ତାର

ଲମ୍ବା ଜଣରୁ ଯେ ଜଣେ ବର ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବର୍ତ୍ତୁଳାକାର ମୁଖମଣ୍ଡଳରୁ ସେ ଜଣେ ପଣ୍ଡିତ ପରି ଜଣାପଡୁଥିଲା ।

ସଭାପତି ମହୋଦୟ ତାଙ୍କ ଭାଷଣରେ କହିଲେ ଏ ପ୍ରକାର ବାତ୍ୟା ଆମର ଅଶ୍ରୁତପୂର୍ବ ଏବଂ ସେଥିରେ ମୃତ୍ୟୁ ସଂଖ୍ୟା ଏତେ ଅଧିକ ଯେ ତାକୁ କଳନା କରି ହେଉ ନାହିଁ । ବାତ୍ୟାରେ ପଶୁମାନଙ୍କର ମୃତ୍ୟୁ ସଂଖ୍ୟା ଯଥେଷ୍ଟ ବେଶୀ । ତାହା ମଧ୍ୟ କଳନାତୀତ । ସେ ସରକାରଙ୍କର ଅପାରଗ ପଣିଆକୁ କଠୋର ସମାଲୋଚନା କରି କହିଲେ ପ୍ରତିଦିନ ସମ୍ବାଦପତ୍ର ତଥା ଇଲେକ୍ଟ୍ରୋନିକ୍ ଗଣମାଧ୍ୟମରେ ଗାଈ ଗୋରୁ ଛେଳି ମେଣ୍ଢା ପ୍ରଭୃତିଙ୍କର ମୃତ୍ୟୁ ସଂଖ୍ୟା ପ୍ରକାଶ ପାଉଥିବା ବେଳେ ବିରାଡ଼ି ଭଳି ପ୍ରିୟ ଗୃହପାଳିତ ପଶୁ ଯେଉଁମାନଙ୍କୁ ମଣିଷ ତାର ପରିବାରର ସଦସ୍ୟରୂପେ ଗ୍ରହଣ କରିଥାଏ ତାର ମୃତ୍ୟୁ ସଂଖ୍ୟା ମୋଟେ ପ୍ରକାଶ ପାଉ ନାହିଁ । ଏହା ସରକାରଙ୍କର ଆମ ପ୍ରତି ହେୟ ମନୋଭାବର ସୂଚନା । ସେ ଏଥିପାଇଁ ମୁଖ୍ୟମନ୍ତ୍ରୀଙ୍କର ଇସ୍ତଫା ଦାବି କରିଥିଲେ ।

ଏହି ପ୍ରଥମ ପ୍ରସ୍ତାବଟି ଗୃହୀତ ହେଲା ପରେ ସେମାନେ ବାତ୍ୟାଞ୍ଚଳର ଲୋକମାନଙ୍କ ପାଇଁ କଅଣ କରିପାରିବେ ତା ଉପରେ ଆଲୋଚନା କଲେ, ସଭାପତି ମହୋଦୟ କହିଲେ ବାତ୍ୟା ଅଞ୍ଚଳକୁ ତ ପ୍ରତିଦିନ କୋଟି କୋଟି ଟଙ୍କାର ଜିନିଷ ଆସୁଛି ଏବଂ ତାହା ପୃଥିବୀର ବିଭିନ୍ନ ସ୍ଥାନରୁ ଆସୁଛି । ଏହା ଏକ ଶୁଭ ସୂଚନା । ଆମେ ସେଥିପାଇଁ ସେମାନଙ୍କୁ ଧନ୍ୟବାଦ ଦେବା ଉଚିତ । କିନ୍ତୁ ଆମ୍ଭେମାନେ ବିରାଡ଼ି ଏବଂ ଖାସ୍ କରି ଜାତିରେ ପଶୁ ହୋଇଥିବାରୁ ଆମେ ସେମାନଙ୍କଠାକୁ ଏପରି ଏକ ଜିନିଷ ପଠାଇବା ଯାହା ଅନ୍ୟ କେହି ପଠାଉ ନଥିବେ । ସେ ଜିନିଷ ମଧ୍ୟ ଏପରି ହେବା ଉଚିତ୍ ଯାହା ସେ ଅଞ୍ଚଳର ମଣିଷ ଓ ବିରାଡିମାନଙ୍କର ଅତ୍ୟନ୍ତ ପ୍ରିୟ ଖାଦ୍ୟ ହୋଇଥିବ । ଏଥିରୁ ଅନ୍ତତଃ ଗୋଟାଏ କଥା ସ୍ପଷ୍ଟ ହେବ ଯେ ବିରାଡି ପଶୁ ହେଲେ ମଧ୍ୟ ତାର ମଣିଷ ଅପେକ୍ଷା ଉନ୍ନତ ରୁଚି ଅଛି ।

ସମସ୍ତେ ସଭାପତିଙ୍କ ମୁହଁକୁ ଅନାଇ ରହିଲେ । ଏହା ସେମାନଙ୍କୁ ଏକ କୌତୁକିଆ ପ୍ରଶ୍ନ ପରି ଲାଗିଲା । ତାର ଉତ୍ତର କଅଣ ହେବ ସେମାନେ ସେ କଥା ମୋଟେ ଚିନ୍ତା କରି ପାରୁ ନଥିଲେ । ଏପରି କେଉଁ ଜିନିଷ ଅଛି ଯାହା ଉଭୟଙ୍କର ଅତି ପ୍ରିୟ ?

ସେମାନେ ନୀରବ ରହିବାର ଦେଖି ସଭାପତି ମହୋଦୟ ପୁଣି କହିଲେ ଆମେ ଯଦି ରିଲିଫ୍ ଆକାରରେ କିଛି ଶୁଖୁଆ ପଠାଇବା ତେବେ କେମିତି ହେବ ?

ସମସ୍ତେ ତାଳିମାରି ସଭାସ୍ଥଳ କମ୍ପେଇ ପକେଇଲେ । ସେମାନେ କହିଲେ ବର୍ତ୍ତମାନ ଅବସ୍ଥାରେ ଶୁଖୁଆ ହିଁ ଏକମାତ୍ର ଖାଦ୍ୟ ଯାହାକୁ ଥାଳି ପାଖରେ ଦେଖୁ ଦେଖୁ ଖାଦ୍ୟ ଭିତରକୁ ଚାଲିଯିବ । ସେ କହିଲେ ଏବେ ସରକାରଙ୍କ ତରଫରୁ ଯେଉଁ ବଗଡ଼ା, ମୋଟା ଓ ଉସୁମୁଳିଆ ଗନ୍ଧଯୁକ୍ତ ଚାଉଳ ମିଳୁଥିବ ତାର ଭାତ ମୋଟେ ଖାଇ ହେଉନଥିବ । ଭୋକ ଜ୍ୱାଳାରେ ମଧ୍ୟ ରହି ହେଉ ନଥିବ । ତେଣୁ ତାର ପଖାଳ ଶୁଖୁଆ ପୋଡ଼ାର ବାସନାରେ କୁଆଡ଼େ କେମିତି ଚଳେଇବ ସେକଥା ଜଣା ପଡ଼ିବନି । ତା' ଛଡ଼ା ଏବେ ସେ ଅଞ୍ଚଳରେ କିଛି ପରିବା ଥିବ ଯେ ସେମାନେ ତରକାରି ଟିକେ ପାଇବେ ? ଶୁଖୁଆ ସେମାନଙ୍କର ଅନେକ କାମରେ ଲାଗିବ ।

ଅନ୍ୟ ଜଣେ କହିଲେ ଖାଲି ମଣିଷ ପାଇଁ ନୁହେଁ ଏହା ବିରାଡ଼ିମାନଙ୍କ ପାଇଁ ମଧ୍ୟ ଏକ ଆଶୀର୍ବାଦ । ଯୋଉ ବଗଡ଼ା ଚାଉଳର ଭାତକୁ ମଣିଷମାନେ ଖାଇ ନପାରି ଫିଙ୍ଗିବେ ତାକୁ ଆମ ବିଲେଇମାନେ ଶୁଖୁଆ ବାସନାରେ ଗିଳି ପକେଇବେ । ସେ ଦିନର ମିଟିଂ ସେଇଠି ଶେଷ ହେଲା । ସେମାନେ ୧୦ ଟ୍ରକ୍ ଶୁଖୁଆ ପଠେଇବାକୁ ଠିକ୍ କଲେ ।

ରିଲିଫ୍ ଟ୍ରକ୍ ଯିବା ଦିନ ଜିଲ୍ଲାପାଳଙ୍କ ଅଫିସ୍ ସାମନାରେ ଏକ ବିରାଟ ସଭା ହେଲା । ଜିଲ୍ଲାର ପ୍ରମୁଖ ବିଲେଇମାନେ ସେଦିନ ସେଠି ଏକତ୍ରିତ ହେଲେ । ବିଲେଇମାନେ ବାତ୍ୟାକ୍ଲିଷ୍ଟ ଲୋକଙ୍କ ପାଇଁ ଶୁଖୁଆ ପଠାଉଥିବା ଖବର ଘ୍ୟା' ଭିତରେ ଚାରିଆଡ଼େ ପ୍ରଚାର ହୋଇଯାଇ ଥିବାରୁ ସେଦିନ ସେଠାରେ ପ୍ରଚୁର ଲୋକ ଆସି ଜମା ହେଲେ । ସମ୍ବାଦପତ୍ରର ପ୍ରତିନିଧିମାନଙ୍କ ଗହଣରେ ଆରମ୍ଭ ହୋଇଥିବା ଏ ସଭାରେ ସବୁ ରାଜନୈତିକ ଦଳର ନେତା, ସ୍ଥାନୀୟ ବିଧାୟକ, ସାଂସଦ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ସେମାନେ ସମସ୍ତେ ବିରାଡ଼ିମାନଙ୍କର ମାନବବାଦୀ କାର୍ଯ୍ୟକ୍ରମକୁ ଭୂୟସୀ ପ୍ରଶଂସା କରି ଭାଷଣ ଦେଲେ । ଜଣେ ନେତାତ କହୁ କହୁ ଏମିତି କହି ପକେଇଲେ ଯେ 'ଆମେ ସମସ୍ତେ ବିରାଡ଼ିମାନଙ୍କ ପଦାଙ୍କ ଅନୁସରଣ କରିବା ଉଚିତ୍ ।'

ସଭା ଶେଷରେ ପୁଲିସ ମୁଖ୍ୟ ଜିଲ୍ଲାପାଳଙ୍କୁ କହିଲେ ଶୁଖୁଆ ଏକ ଅତ୍ୟନ୍ତ ସ୍ପର୍ଶ ପ୍ରବଣ ସାମଗ୍ରୀ ହୋଇଥିବାରୁ ତାକୁ ବିନା ଜଗୁଆଳୀରେ ବାହାରକୁ ଛାଡ଼ିବା ଉଚିତ ହେବ ନାହିଁ । ତା'ଛଡ଼ା ଆଜିକାଲି ଯେମିତି ରିଲିଫ୍ ସାମଗ୍ରୀ ବାଣ୍ଟମାରଣା ହେଉଛି ସେଥିରେ ଏହା ଯେ ଠିକ୍ ଜାଗାରେ ପହଞ୍ଚିପାରିବ ଏଥିରେ ମୋର ସନ୍ଦେହ ରହିଛି । ସେ କହିଲେ ମୁଁ ଦଶଟି ଟ୍ରକ୍‌ରେ ଦଶ ଜଣ ବନ୍ଧୁକଧାରୀ ପୁଲିସ ଜଗୁଆଳୀ ଦେଇ ଦେଉଛି । କାରଣ ରିଲିଫ୍ ସାମଗ୍ରୀକୁ ଏବେ ଆମେ ଜାତୀୟ ସମ୍ପତ୍ତି ବୋଲି ମନେ କରିବା ଉଚିତ । ତାର ସୁରକ୍ଷା ଆମର ଏକ ପବିତ୍ର କର୍ତ୍ତବ୍ୟ ।

ଏ କଥାଟା ସମସ୍ତଙ୍କ ମନକୁ ପାଇଲେ ମଧ୍ୟ ବିଲେଇମାନେ ଏ କଥାକୁ ସନ୍ଦେହ ଆଖିରେ ଦେଖିଲେ । ଏ ପ୍ରସ୍ତାବ ପଛରେ ପୁଲିସ ମୁଖ୍ୟଙ୍କର କିଛି ମନ୍ଦ ଉଦ୍ଦେଶ୍ୟ ଥିବ ବୋଲି ସେମାନେ ଭାବିଲେ । ଆଜିକାଲି କାହାକୁ ବା ବିଶ୍ୱାସ କରିହେବ ? ବିଲେଇଙ୍କ ନେତା କହିଲେ ପୁଲିସ ଜଗୁଆଳୀ ପ୍ରସ୍ତାବକୁ ଆମେ ଗ୍ରହଣ କରୁଛୁଁ । କିନ୍ତୁ ତା ସହିତ ଆମ ନିଜ ଲୋକ ମଧ୍ୟ ପ୍ରତି ଟ୍ରକ୍‌ରେ ଯିବ । ସେ ସଙ୍ଗେ ସଙ୍ଗେ ଦଶ ଜଣ ମୋଟା ତାଗଡ଼ା ବିଲେଇଙ୍କୁ ଦଶଟା ଟ୍ରକ୍‌ରେ ଯିବାକୁ ନିର୍ଦ୍ଦେଶ ଦେଲେ ।

ଏତିକିବେଳେ ସ୍ଥାନୀୟ ବିଧାୟକ ଜିଲ୍ଲାପାଳଙ୍କ ପାଖକୁ ଲାଗି ଆସି କହିଲେ ରାସ୍ତାରେ ପୁଲିସ ଓ ବିଲେଇମାନଙ୍କ ଭିତରେ ଯଦି କିଛି ବୁଝାମଣା ହୋଇଯାଏ ? ଆମର ଏ ଜାତୀୟ ସମ୍ପତ୍ତି ପାଇଁ ଆପଣ ଏମିତି ରିସ୍କ ନେବା ଉଚିତ ନୁହେଁ ।

ଶେଷରେ ସମସ୍ତଙ୍କ ପରାମର୍ଶ କ୍ରମେ ସର୍ବଦଳୀୟ କମିଟି ତରଫରୁ ଜଣେ ଜଣେ କୋଅର୍ଡ଼ିନେଟର ମଧ୍ୟ ଟ୍ରକ୍‌ରେ ଯିବାର ସ୍ଥିର ହେଲା । ସେମାନେ ରାସ୍ତାରେ ଆବଶ୍ୟକ ହେଲେ ସ୍ଥାନୀୟ ପ୍ରଶାସନ ଏବଂ ରାଜନୈତିକ ଦଳଙ୍କ ସାହାଯ୍ୟ ଲୋଡ଼ିପାରିବେ ।

ଟ୍ରକ୍‌ମାନଙ୍କର ଯାତ୍ରା ଆରମ୍ଭ ହେବା ବେଳକୁ ଜଣେ ଲୋକ ଧାଇଁ ଧାଇଁ ଆସିଲା । ତା ହାତରେ ଥିଲା ଖଣ୍ଡେ କାଗଜ । ସେ କାଗଜଖଣ୍ଡିକ ଜିଲ୍ଲାପାଳଙ୍କ ହାତକୁ ବଢ଼ାଇ ଦେଲା । ତାହା ଥିଲା ମୁଖ୍ୟମନ୍ତ୍ରୀଙ୍କ ମେସେଜ୍ ।

ସେଥିରେ ଯାହା ଲେଖାଥିଲା ତାର ସାରମର୍ମ ହେଲା, 'ବଲେଇମାନେ ଓଲମ୍ପିକ୍ ପଠେଇବା ବଡ଼ କଥା ନୁହେଁ, ବଡ଼ କଥା ହେଲା ମଣିଷମାନଙ୍କର ଚରମ ଦୁର୍ଗତି ସମୟରେ ବଲେଇ ପରି ନଗଣ୍ୟ ପଶୁମାନେ ମଧ୍ୟ ସମ୍ବେଦନଶୀଳ ହୋଇ ସେମାନଙ୍କ ପ୍ରାଣଠାରୁ ପ୍ରିୟ ଶୁଖୁଆକୁ ଯେ ଦାନ କରିପାରିଲେ ତାହାହିଁ ବଡ଼ କଥା। ଏହାହିଁ ଆଗାମୀ ଶତାବ୍ଦୀରେ ଓଡ଼ିଆ ଜାତିର ଖାଲି ନୁହେଁ, ମଣିଷର ଇତିହାସକୁ ମଧ୍ୟ ନୂଆ କରି ଲେଖିବ।'

ଜାଲ୍ମାପାଲ ମେସେଜ୍‌ଟିକୁ ବଲେଇଙ୍କ ନେତାଙ୍କ ହାତକୁ ବଢ଼େଇ ଦେଲେ ଏବଂ କହିଲେ ଆପଣ ଆମ ସମସ୍ତଙ୍କ ନମସ୍ୟ।

ଅସଂଖ୍ୟ ଶଙ୍ଖ ଧ୍ୱନି ଏବଂ ହୁଳହୁଳି ମଧ୍ୟରେ ଏବଂ ଘନ ଘନ ଟିଭି କ୍ୟାମେରାର କ୍ଲିକ୍ କ୍ଲିକ୍ ଶବ୍ଦ ଭିତରେ ଟ୍ରକ୍‌ମାନଙ୍କର ଯାତ୍ରା ଆରମ୍ଭ ହେଲା। କଥା ହେଲା ଡ୍ରାଇଭରମାନେ ଏପରି ଭାବରେ ଗାଡ଼ି ଚଲେଇବେ ଯେପରିକି ସୂର୍ଯ୍ୟାସ୍ତର ଯଥେଷ୍ଟ ପୂର୍ବରୁ ଗାଡ଼ିଗୁଡ଼ିକ ଯଥା ସ୍ଥାନରେ ପହଞ୍ଚିପାରିବ।

ଠିକ ତାହାହିଁ ହେଲା। ଠିକ୍ ଅପରାହ୍ଣ ଚାରିଟା ଧୁଦ୍ଧା ସବୁ ଗାଡ଼ି ଯାଇ ବାତ୍ୟାଞ୍ଚଳର ମୁଖ୍ୟ ରିଲିଫ୍ କେନ୍ଦ୍ରରେ ପହଞ୍ଚିଗଲା। ଗାଡ଼ି ପହଞ୍ଚିବାର ଯଥେଷ୍ଟ ପୂର୍ବରୁ ସେଠି ମୁଖ୍ୟ ରିଲିଫ୍ କମିଶନର ତାଙ୍କ ସହକର୍ମୀମାନଙ୍କୁ ଧରି ବଲେଇମାନଙ୍କୁ ସରକାରଙ୍କ ତରଫରୁ ରିସିଭ୍ କରିବାକୁ ଉପସ୍ଥିତ ଥିଲେ। ରିଲିଫ୍ ଇତିହାସରେ ଏହା ଏକ ବିଶେଷ ଘଟଣା ହୋଇଥିବାରୁ ସେଠାରେ ମଧ୍ୟ ହଜାର ହଜାର ଲୋକ ଉପସ୍ଥିତ ଥିଲେ।

ରିଲିଫ୍ କମିଶନର ନିଜ ହାତରେ ଫୁଲମାଳ ଧରି ଆଗେଇ ଚଲେ। ତାଙ୍କ ପଛରେ ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି, ଟିଭି କ୍ୟାମେରା, ଦେଶ ବିଦେଶର ସାମ୍ବାଦିକମାନେ, ଜାତିସଂଘ ଓ ବିଶ୍ୱବ୍ୟାଙ୍କର ସ୍ୱତନ୍ତ୍ର ପ୍ରତିନିଧି-ମାନେ, କେନ୍ଦ୍ର ସରକାରଙ୍କ ସ୍ୱତନ୍ତ୍ର ପ୍ରତିନିଧିମାନେ ଉପସ୍ଥିତ ଥାଆନ୍ତି। ସମସ୍ତଙ୍କ ନଜର ଗାଡ଼ି ଉପରେ। ସମସ୍ତଙ୍କ ଆଖି ଖୋଜି ବୁଲୁଥାଏ ସେଇ ବଲେଇ ମହାତ୍ମାଙ୍କୁ ଦେଖିବାକୁ। ସମଗ୍ର ପୃଥିବୀରେ ଚହଳ ପଡ଼ି ସାରିଲାଣି। ବଲେଇଙ୍କ ନେତା ଗାଡ଼ି ଭିତରୁ ବାହାରକୁ ଆସିଲା ମାତ୍ରେ ତାଙ୍କୁ ଯେଉଁ ସମ୍ବର୍ଦ୍ଧନା ଦିଆଯିବ ତାହା ସମଗ୍ର ପୃଥିବୀ ଦେଖିପାରିବ।

କିନ୍ତୁ ଏ କଅଣ ? ଗାଡ଼ିରେ ତ କେହି ନାହିଁ । ଗଲେ କୁଆଡ଼େ ? କେହି ଜଣେ ଆସି କହିଲା ଗାଡ଼ିରେ ବି କିଛି ନାହିଁ । ଖଣ୍ଡିଏ ବୋଲି ଶୁନୂଆ ଗାଡ଼ିରେ ଦେଖିବାକୁ ମିଳିଲା ନାହିଁ । ଗାଡ଼ି ସବୁ ତନ୍ନ ତନ୍ନ କରି ଖୋଜାଗଲା । କୋଉଠି କିଛି ଚିହ୍ନ ବର୍ଣ୍ଣ ମଧ୍ୟ ନାହିଁ । ତେବେ ଗୋଟିଏ ଗାଡ଼ିରେ ଦେଖାଗଲା ଯେ ତାର ଡ୍ରାଇଭର ସିଟ୍ ପାଖରେ ବଲେଇଙ୍କ ନେତା ରକ୍ତାକ୍ତ ଶରୀରରେ ମରି ପଡ଼ିଚନ୍ତି । ତାଙ୍କ ଆଖି ଦୁଇଟି ତଥାପି ଯେମିତି ଜଳୁଥିଲା ।

ସମସ୍ତ ବାୟୁମଣ୍ଡଳ ଯେମିତି ସ୍ତବ୍ଧ ହୋଇଗଲା । କମିଶନର ସାହେବ ଆଗେଇ ଗଲେ ଏବଂ ତାଙ୍କର ବେକରେ ଫୁଲମାଳଟି ଲମ୍ବେଇ ଦେଲେ ।

(ପ୍ରଜାତନ୍ତ୍ର ୧୨।୧୨।୯୯)



ଥରେ ଦୁଇ ବନ୍ଧୁ ବସି କଥା ହେଉଥିଲେ । ଜଣେ କହିଲେ ବୁଝିଲ ବନ୍ଧୁ, ମୋ ସ୍ତ୍ରୀର ସୌନ୍ଦର୍ଯ୍ୟ ଜ୍ଞାନ ବୋଲି କିଛି ନାହିଁ ।'

କେମିତି ଜାଣିଲେ ? ଅନ୍ୟ ଜଣକ ପଚାରିଲେ ।

ମୁଁ ଯେତେଥର ଏ ସହରର ଅତ୍ୟନ୍ତ ସୁନ୍ଦରୀମାନଙ୍କ ସହିତ ତାଙ୍କର ପରିଚୟ କରାଇ ଦେଇଛି, ସେ ବିରକ୍ତ ହୋଇଛନ୍ତି ।



# ॥ ମହାରାଜା ଓ ମହୁମାଛି ॥

ବସନ୍ତ ନଗରର ଉପକଣ୍ଠରେ ସେଦିନ ବସନ୍ତ ସମାବେଶ । ସୁସଜ୍ଜିତ ମଞ୍ଚ । ମଞ୍ଚ ଚାରିପଟେ ମଲ୍ଲୀ, ମାଳତୀ, ବକୁଳ, ଚମ୍ପାଅନାର ସୁନ୍ଦର ଉପବନ । ଅନତି ଦୂରରେ ଛୋଟ ପାହାଡ଼ଟିଏ । ପାହାଡ଼ ତଳେ ମନୋରମ ଝରଣା । ଝରଣାରୁ ପାଣି ଝରୁଛି ଅବିରତ ।

ଜନସମୁଦ୍ର ଅପେକ୍ଷା କରିଛି ମହାରାଜଙ୍କୁ । ସେମାନେ ଆସିଛନ୍ତି ଅନେକ ଦୂରରୁ । ସେମାନେ ଦର୍ଶନାଭିଳାଷୀ । ସେମାନେ ଜାଣନ୍ତି ମହାରାଜଙ୍କ ସାମାନ୍ୟ ଦର୍ଶନ ହିଁ ଗଢ଼ି ଦେବ ସେମାନଙ୍କ ଭାଗ୍ୟ । ହୁଏତ ଶସ୍ୟ ଶ୍ୟାମଳା କରିଦେବ ତାଙ୍କର ଅନେକ ଦିନୁଁ ଜଳଶୂନ୍ୟ ଥିବା ଶସ୍ୟ କ୍ଷେତ କିମ୍ବା ରାସ୍ତା ଫିଟେଇବ ସେମାନଙ୍କ ଜୀବିକାର୍ଜନର ।

ଜନତା ପାଇଁ ମହାରାଜା ଏକ ଦୁର୍ଲ୍ଲଭ ବସ୍ତୁ । ଏକ ଅସରନ୍ତି ଆକାଂକ୍ଷାର ଅଂଶ ବିଶେଷ । ଏକ ଅମୂଲ୍ୟ ସମ୍ପଦ । ତାଙ୍କ ଦର୍ଶନରୁ ପରମାତ୍ମା ପ୍ରାପ୍ତି ହୁଏ । ଜନତାର ଭାଗ୍ୟ ବଦଳିଯାଏ । ବଦଳିଯାଏ ସେଠାର ମାଟି ଓ ମଟାଳ । ବର୍ଷିଯାଏ ମେଘ । ଆଶୀର୍ବାଦର ଧାର ବହି ଯାଏ ଦିଗରୁ ଦିଗନ୍ତକୁ ।

ମହାରାଜ ତାଙ୍କ ସିଂହାସନାରୋହଣର ପଞ୍ଚମ ବର୍ଷରେ ହିଁ ପ୍ରଥମ କରି ତାଙ୍କ ପ୍ରିୟ ପ୍ରଜାଙ୍କ ସହିତ ସିଧାସଳଖ ସମ୍ପର୍କ ସ୍ଥାପନ ଉଦ୍ଦେଶ୍ୟରେ ଗସ୍ତରେ ବାହାରିଛନ୍ତି ।

ମହାରାଜ ବଡ଼ ପ୍ରଜାବତ୍ସଳ । ସ୍ନେହୀ, ପରୋପକାରୀ, ଧାର୍ମିକ, ଦୟାର ଜୀବନ୍ତ ଅବତାର । ଦୀର୍ଘକାଳ ଧରି ସେ ପ୍ରଜାଙ୍କ ସହିତ ମିଶି ପାରି ନ ଥିବାରୁ ଅନୁତପ୍ତ । ପ୍ରାସାଦର ସୁଉଚ୍ଚ ପାଚେରୀ ଭିତରେ ରାଜ

କାର୍ଯ୍ୟର ବ୍ୟାପକତା ତାଙ୍କୁ ବାନ୍ଧି ରଖିଥିଲା । ଏକ ପ୍ରଜାନୁରାଗୀ ଶାସନର ପ୍ରତିଷ୍ଠା ପାଇଁ ପ୍ରାସାଦ ବାହାର ଅପେକ୍ଷା ପ୍ରାସାଦ ଭିତରେ ଯେ ଏତେ ଚାତୁରତା ଥାଏ ଏକଥା ସେ ଜାଣି ନ ଥିଲେ ।

ଗାଡ଼ିର ଡ୍ରାଇଭର କେବଳ ଷ୍ଟିଅରିଂଟିଏ ଧରି ରଖିଲେ ଗାଡ଼ି ଠିକ୍ ଚାଲେ । ଯାତ୍ରୀରେ ଅସୁବିଧା ହୁଏନା । ଏ ପ୍ରକାର ଧାରଣାର ବଶବର୍ତ୍ତୀ ମହାରାଜା କେବଳ ପ୍ରସାଦ ଭିତରୁ ଶାସନ ପରିଚାଳନା କଲେ ଯଥେଷ୍ଟ ବୋଲି ବୋଧେ ଏକ ସ୍ଥିର ନିଷ୍ପତ୍ତିରେ ପହଞ୍ଚି ସାରିଥିଲେ । ପ୍ରାସାଦ ବାହାରକୁ ଆସି ପ୍ରଜାବର୍ଗଙ୍କର ସୁବିଧା ଅସୁବିଧାକୁ ପ୍ରତ୍ୟକ୍ଷ କରିବାର ଆବଶ୍ୟକତା ସେ କେବେ ଅନୁଭବ କରି ନ ଥିଲେ ।

ପ୍ରଜାମାନେ ତ ଚିରଦିନ ହିଁ ପ୍ରଜା । ସେମାନେ ପ୍ରଜାର ଆସନର ଚାରି ଦିଗରେ ଲକ୍ଷ୍ମଣ ରେଖା ଟାଣି ଦେଇ ଯୁଗ ଯୁଗକୁ ନିଜକୁ ଏକ ଅଦୃଶ୍ୟ ଆବଦ୍ଧ କୋଠରୀ ଭିତରେ ବନ୍ଦୀ କରିଦେଇଛନ୍ତି । ତାଠୁ ଉଚ୍ଚତର ଆସନଟିଏ ସେମାନେ କେବେ କଳ୍ପନା ମଧ୍ୟ କରି ନାହାନ୍ତି ।

କେଉଁ ଅଜଣା ଦିନରୁ ଏ ଧ୍ୟାନ ଧାରଣା ଆମର ଚେର ବାନ୍ଧି ରହିଛି । ତାକୁ କି ବଦଳେଇ ହୁଏନା ।

ହେଇ ମହାରାଜ ଆସିଗଲେ । ଆସିଗଲେ ତାଙ୍କ ପାତ୍ର, ମନ୍ତ୍ରୀ କଟୁଆଳ ଓ ସେନାପତି । ଗଗନ ପବନ ପ୍ରକମ୍ପିତ କରି ସେ ଆସିଗଲେ । ରଥ ହସ୍ତୀ ଓ ଅଶ୍ବଙ୍କ ଆଗମନରେ ସମଗ୍ର ବାୟୁ ମଣ୍ଡଳ ଧୂଳି ଓ ଧୂସରିତ ହେଲା । ମନେ ହେଲା ସଫେଦ ମେଘଟିଏ କାହିଁ ଅଚାନକ ମାଡ଼ି ଆସିଲା ଅବା । ଚତୁର୍ଦ୍ଦିଗ ଅନ୍ଧକାର ହେଲା । କ୍ଷଣିକ ପାଇଁ ଜନତା ଭୟଭୀତ ହେଲା ଏ କଅଣ ରାଜା କହନ୍ତି ? ତାଙ୍କ ପାତ୍ର ମନ୍ତ୍ରୀ ? ଚାଟୁକାର ଦଳ ? ଯେଉଁ-ମାନେ ତାଙ୍କୁ ଏତେ ଦିନ ଯାଏ ପ୍ରାସାଦରେ ବାନ୍ଧି ରଖିଥିଲେ ? ଯାହାଙ୍କ ପାଇଁ ରାଜା ଏଯାଏ ପ୍ରଜାଗଣଙ୍କୁ ମନେ ପକେଇ ପାରୁ ନଥିଲେ ? କାହାନ୍ତି ସେମାନେ ?

କିନ୍ତୁ ସେସବୁ କ୍ଷଣିକ ମାତ୍ର । କିଛି ସମୟ ପରେ ଆକାଶ ନିର୍ମଳ ହେଲା । ଚତୁର୍ଦ୍ଦିଗ କାଚ ପରି ସ୍ୱଚ୍ଛ ଓ ପରିଷ୍କାର । ହୁଅନ୍ତାନି କି ?

ମହାରାଜ ଆସୁଚନ୍ତି ଯେତେବେଳେ ଧୂଳିର ମିଛ ବଳସ୍ପୃହା କେତେକାଳ ଆଉ ମେଘମାନ ସୂର୍ଯ୍ୟଙ୍କୁ ଢାଙ୍କି ରଖିପାରିବ ?

ବୈକୁଣ୍ଠ ନଗର ମହାରାଜା ସ୍ୱୟଂ ସମ୍ଭୂତ । ଯେପରି ମହାଜ୍ଞାନୀ ପଣ୍ଡିତ ସେହିପରି ବୀର ପରାକ୍ରମୀ ମଧ୍ୟ । ଆଦେଶ ମାତ୍ରେ ସୂର୍ଯ୍ୟ ଚନ୍ଦ୍ର ଅଟକି ଯାଆନ୍ତି ମହାଶୂନ୍ୟର ମଧ୍ୟସ୍ଥଳରେ ।

ଜନତା ମୁଖରେ ହସର ଝଲକ । ସେମାନେ ଏବେ ତାଙ୍କ ପ୍ରିୟ ମହାରାଜଙ୍କ ମୁହଁ ସ୍ପଷ୍ଟ ଦେଖି ପାରୁଚନ୍ତି । ଆହା କି ସୌମ୍ୟ ସୁଦର୍ଶନ ବେଶ । କି ପ୍ରଶାନ୍ତ ତଥା ତେଜୋଦୀପ୍ତ ମୁଖ । ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ସେଥିରେ ଲୁକ୍‌କାଇତ ଅଛି ଅବା ।

ଜନତା ଅଭିନନ୍ଦନ ଜଣାଇଲା । ମସ୍ତକ ଅବନତ କଲା । ମହାରାଜା ମଞ୍ଚ ଉପରେ ଠିଆ ହୋଇ ପଡ଼ିଲେ ଏବଂ ଦୁଇ ବାହୁ ଉପରକୁ ଟେକି ଆଶୀର୍ବାଦ କଲେ ।

ସେ ଉଦ୍‌ବୋଧନ ଦେବାକୁ ଆରମ୍ଭ କଲେ ।

ହେ ମୋର ପ୍ରିୟ ଦେଶବାସୀଗଣ ! ଘନ ଘନ କରତାଳି ମଧ୍ୟରେ ଆକାଶ ବତାସ କମ୍ପି ଉଠିଲା ।

ଜନତା ଭିତରୁ କେହି ଜଣେ ମନ୍ତବ୍ୟ ଦେଲା । ଦେଖିଲେ ସେ ଆମକୁ ପ୍ରିୟ ଦେଶବାସୀ ବୋଲି କହିଲେ । ଆଉ ଜଣେ କହିଲା-ଆମେ କଅଣ ପ୍ରକୃତରେ ତାଙ୍କର ପ୍ରିୟ ନୁହେଁ କି ?

ସେ ମଧ୍ୟ ଆମର ପ୍ରିୟ ରାଜା ।

ଏଥିରେ କି ସନ୍ଦେହ ଅଛି ? ତା ଯଦି ହୋଇ ନ ଥାଆନ୍ତା ତେବେ ଆମେ ତାଙ୍କୁ ଗାଦିରେ ବସାଇ ଥାଆନ୍ତୁ କେମିତି ?

ସେ ଗାଦିରେ ବସିଲା ପରେ ଆମକୁ ଭୁଲିଯାଇଥିଲେ ମଧ୍ୟ ତାଙ୍କୁ ମନେ ରଖିଥାନ୍ତୁ କେମିତି ?

ରାଜା ପୁଣି ଆରମ୍ଭ କଲେ ମୁଁ ମନୋରମ ରାଜପ୍ରାସାଦରେ ଥାଇ ଆପଣମାନଙ୍କ କଥା ଭୁଲି ଯାଇଥିଲି ବୋଲି ମନେ କରନ୍ତୁନି ।

ହେଇ ଦେଖିଲ, ମୁଁ କଅଣ କହୁଥିଲି ?

ଆପଣଙ୍କର ଏଠାକୁ ଆସିବାକୁ ରାସ୍ତାଟିଏ ନ ଥିଲା ବୋଲି ମୁଁ ଏଠାକୁ ଆସି ପାରୁ ନଥିଲି । ଦୁଃଖ ଓ ପରିତାପର ବିଷୟ ଯେ ମୋର ପିତାମହ ଓ ପ୍ରପିତାମହ ଆପଣଙ୍କର ଏ ଅଞ୍ଚଳକୁ ରାସ୍ତାଟିଏ ମଧ୍ୟ କରି ପାରିନଥିଲେ । ସେମାନଙ୍କର ଅବହେଳା ପାଇଁ ମୁଁ ଦୁଃଖ ପ୍ରକାଶ କରି ତାର ପ୍ରାୟଶ୍ଚିତ କରିବାକୁ ଚାହୁଁଛି ।

ଜନତା ଭିତରୁ ପାଟି ଶୁଭିଲା, ଆଜି ଆମେ ସେ କଥା ଭୁଲି ଗଲୁଣି । ଆପଣ ଆମର ପ୍ରିୟ ରାଜା ଆପଣ ଅନ୍ୟ କଥା ଆରମ୍ଭ କରନ୍ତୁ ।

ମୁଁ କିନ୍ତୁ ଆପଣମାନଙ୍କ ପାଇଁ ଖାଲି ରାସ୍ତାଟିଏ ନୁହେଁ ଅନେକ କିଛି କରିବାକୁ ଚାହୁଁଛି ।

ଏତିକିବେଳେ ମହାମନ୍ତ୍ରୀ ଆସି ରାଜାଙ୍କ କାନ ପାଖରେ କହିଲେ ମହାରାଜ ! ଭାଷଣ ସଂକ୍ଷିପ୍ତ କରନ୍ତୁ । କାରଣ ଆପଣଙ୍କ ଘୋଡ଼ାକୁ ଖୁବ୍ ଶୋଷ ହେଲାଣି । ଏଇ ଦଶ କୋଶ ଦୂରରେ ଏପରି କୌଣସି ଜଳାଶୟ ନାହିଁ ଯେଉଁଠୁ ଆପଣଙ୍କ ଘୋଡ଼ା ପାଣି ପିଇ ପାରିବ । ଯାହା ଅଛି ସେଥିରେ ଆପଣଙ୍କ ଘୋଡ଼ା ମୁହଁ ନ ମାରି ଫେରି ଆସିଲା ।

ମହାରାଜ ସଙ୍ଗେ ସଙ୍ଗେ ଘୋଷଣା କଲେ ବେଶ ଏଠି ଆମ ଘୋଡ଼ା ପ୍ରଭୃତି ପଶୁମାନଙ୍କ ପାଇଁ ଅତି ଶୀଘ୍ର ଜଳାଶୟଟିଏ ମଧ୍ୟ ହେବ ।

କେହି ଜଣେ ସଭା ଭିତରୁ ପାଟି କଲା ଆମ ପାଇଁ ? ଆମେ ମଧ ପିଇବାକୁ ପାଣି ପାଉନୁ ।

ମହାରାଜ କହିଲେ ଆପଣମାନେ ମଧ୍ୟ ସେଥିରୁ ପାଣି ବ୍ୟବହାର କରିପାରିବେ ।

ସଭାରେ ଅଖଣ୍ଡ ନୀରବତା ।

ମହାରାଜ ପୁଣି ଆରମ୍ଭ କଲେ । ମୁଁ ଜାଣେ କ୍ଷୁଧା, ଦୁର୍ଭିକ୍ଷ, ମହାମାରୀ ରୋଗ, ଦୈବିପତ୍ୟ ଓ ସବୁ ଆମ ଦେଶର ଚିର ସହଚର । କିନ୍ତୁ ଏସବୁତ ସୃଷ୍ଟିର ଆରମ୍ଭରୁ ରହିଛି ଓ ରହିବ ମଧ୍ୟ । ମଣିଷ ଯେଉଁଠି ଦୁଃଖ ଦାରିଦ୍ର୍ୟ ସେଇଠି । ମଣିଷ ତାକୁ ଛାଡ଼ି ରହିପାରେନା । ଯାହା ଭାଗ୍ୟରେ ଲେଖା ଅଛି ଅନ୍ୟଥା କରିବ କିଏ ? ତେବେ ତା ବିରୁଦ୍ଧରେ ଆମ ସଂଗ୍ରାମ ଅବ୍ୟାହତ ରହିଛି ଓ ରହିବ ମଧ୍ୟ । ଏହାହିଁ ତ ବିକାଶର ଧାରା ବୋଲି ଇତିହାସ ଆମକୁ କହେ ।

'ତେବେ ଗୋଟିଏ କଥା' ସେ ପୁଣି ଆରମ୍ଭ କଲେ । ଗୋଟିଏ କଥା ଯାହା ମୋତେ ବେଶି ବିଚଳିତ କରୁଛି ତାହା ହେଲା ଅନାହାର ଜନିତ ମୃତ୍ୟୁ । ମୁଁ କିନ୍ତୁ ପ୍ରତିଶ୍ରୁତି ଦେଉଛି,ମୋ ରାଜ୍ୟରେ ଗୋଟିଏ ବୋଲି ଲୋକ•••ଅ ଅ

ହଠାତ୍ ବୋଧେ ତାଙ୍କ ପାଟିରେ ପୋକଟିଏ ପଶିଗଲା । ସଙ୍ଗେ ସଙ୍ଗେ ସାତ ଆଠ ଜଣ ସଶସ୍ତ୍ର ପ୍ରହରୀ ମଞ୍ଚ ଉପରକୁ ଉଠି ଆସିଲେ ଏବଂ ଚାରି ଦିଗକୁ ସେମାନଙ୍କ ସତର୍କ ଦୃଷ୍ଟି ନିକ୍ଷେପ କଲେ । ପ୍ରହରୀମାନଙ୍କ ଦଳପତି ଆସି ବିନମ୍ର ହୋଇ ପଚାରିଲେ, ମହାରାଜଙ୍କର କିଛି କ୍ଷତି ହେଉନି ତ ? ବେଶ ପୃଥୁଳକାୟ ଏବଂ କୁର୍ତ୍ତା ପରିହିତ ଜଣେ ବ୍ୟକ୍ତି ଯେ କି ଏଯାଏ ରାଜାଙ୍କ ପଶ୍ଚାତ୍ ଭାଗରେ ରହି ଚାମର ବିଞ୍ଚୁଥିଲେ ସେ ପ୍ରହରୀମାନଙ୍କ ଦଳପତିଙ୍କୁ ଧମକାଇ ଦେଇ କହିଲେ, ଡାକ୍ତର ଡାକିବି ମହାରାଜ ? ଆମ୍ବୁଲାନ୍ସରେ ଡାକ୍ତର ଓ ତାଙ୍କ ବିଶେଷଜ୍ଞଦଳ ସମସ୍ତ ପ୍ରକାର ଅତ୍ୟାଧୁନିକ ଯନ୍ତ୍ରପାତି ସହ ଅପେକ୍ଷା କରିଛନ୍ତି ।

ମହାରାଜା କହିଲେ, ନା ଆବଶ୍ୟକ ନାହିଁ । ମୋର ପ୍ରିୟ ପ୍ରଜାଗଣଙ୍କ ପାଇଁ ରାଜଧାନୀରୁ ଆଣିଥିବା ସନ୍ଦେଶ ମୁଁ ଅବଶ୍ୟ ସେମାନଙ୍କ ପାଖରେ ବାଢ଼ିବି । କେତେ ଦୂରଦୂରାନ୍ତରୁ ଆସି ସେମାନେ ମୋ ପାଇଁ ଅପେକ୍ଷା କରିଛନ୍ତି ।

ପାଖରେ ଥିବା ମନ୍ତ୍ରୀ ତାଙ୍କୁ କହିଲେ ସେମାନେ ଆପଣଙ୍କୁ ଖୁବ୍ ଭଲ ପାଆନ୍ତି ।

'ହଁ, ମୁଁ କଅଣ କହୁଥିଲି ।' ମହାରାଜା ପୁଣି ଆରମ୍ଭ କଲେ । ମୋ ରାଜ୍ୟରେ ମୁଁ ଜୀବିତ ଥିବା ଯାଏ ମଣିଷ କଥାତ ଛାଡ଼, ଚଢ଼େଇଟିଏ ମଧ୍ୟ ଅନାହାରରେ···

ହଠାତ ଦୁଇ ତିନିଟା ମହୁମାଛି ଆସି ମହାରାଜଙ୍କ ମୁହଁ ପାଖରେ ଉଡ଼ି ବୁଲିଲେ ।

କ୍ଷଣେ ଅଟକି ଗଲା । ପଛକୁ ପଛ ଆଉ କେତୋଟା ମହୁମାଛି ଆସି ରାଜାଙ୍କ ଶିର ପାଖରେ ବୁଲିବାକୁ ଲାଗିଲେ । ତାପରେ ଆଉ କଛୁ । ତାପରେ ଆଉ କଛୁ ମଧ୍ୟ ଆସିଲେ । ଧୀରେ ଧୀରେ ସେ ସଂଖ୍ୟା ବଢ଼ିବାକୁ ଲାଗିଲା ।

ମହାରାଜ ଏକ ଆସନ୍ନ ବିପଦର ଆଶଙ୍କାରେ କମ୍ପିବାକୁ ଲାଗିଲେ । ସେ ସେତେବେଳକୁ ବାକ୍‌ଶୂନ୍ୟ ହୋଇ ପଡ଼ିଥିଲେ ଏବଂ ଆତ୍ମରକ୍ଷା ପାଇଁ ଦୁଇ ହାତ ଶୂନ୍ୟରେ ବୁଲେଇ ଚାଲିଥିଲେ । ସତେ ଅବା ତାଜିଆ ଖେଳରେ ସେ ଜଣେ ବୀର ସୈନିକ । ଜଣେ ପାରଙ୍ଗମ ଖେଳୁଆଡ଼ ।

ହଠାତ୍ ମହାରାଜାଙ୍କ ଜଣେ ଅଙ୍ଗରକ୍ଷୀ ତା ନିଜ ଦେହରୁ ଗୋଟିଏ ବିରାଟ ବର୍ଷାତି କୋଟ କାଢ଼ି ମହାରାଜଙ୍କୁ ଆପାଦ ମସ୍ତକ ଢାଙ୍କି ଦେଲା । ଅନ୍ୟ ଯେଉଁମାନେ ସେଠି ଥିଲେ ସେମାନେ ଯେ ଯୁଆଡ଼େ ଦୌଡ଼ି ପଳାଇଗଲେ ।

ଯାଃ, ମହାରାଜ ଅନ୍ତତଃ ସୁରକ୍ଷିତ । ଲୋକମାନେ ଆଶ୍ୱସ୍ତ ହେଲେ । ମହାରାଜଙ୍କ ଉପରେ ଆକ୍ରମଣକୁ ସେମାନେ ନିଜ ଉପରେ ଆକ୍ରମଣ ବୋଲି ମନେ କରୁଥିଲେ ।

ଗୋଟିଏ ଧଳା ମାର୍ବଲ ପଥରର ପ୍ଲାଟଫର୍ମ ଉପରେ ମହାରାଜା ଗୋଟିଏ ଷ୍ଟ୍ରେଚର୍ ପରି ଦେଖା ଯାଉଥିଲେ ।

ଜୀର୍ଣ୍ଣ ଶୀର୍ଣ୍ଣ କଙ୍କାଳ ପ୍ରାୟ ବୃଦ୍ଧ ଜଣକ ଅନେକ ବେଳରୁ ବିରାଟ ସମାବେଶର ଶେଷ ଆଡ଼କୁ ଗୋଟିଏ ଆମ୍ବ ଗଛକୁ ଆଉଜି ବସି ମହାରାଜଙ୍କ

ଭାଷଣ ଶେଷ ଅଂଶକୁ ଅପେକ୍ଷା କରୁଥିଲେ । ତାଙ୍କ ହାତ ପାପୁଲି ଉପରେ ରାଣୀ ମହୁମାଛିଟିଏ ଆସି ବସି ପଡ଼ିଲା ।

ଆଶ୍ଚର୍ଯ୍ୟ ହେଲେ ବୃଦ୍ଧ । ଅନ୍ୟ ହାତ ଉଠେଇ ତାକୁ ତଡ଼ିବାର କ୍ଷମତା ମଧ୍ୟ ତାଙ୍କର ନଥିଲା । ବଡ଼ ବିନୟ ଏବଂ ଅନୁଚ୍ଚ ସ୍ୱରରେ ସେ ପଚାରିଲେ, ମୋ ପାଖକୁ ତୁ କାହିଁକି ଆସିଲୁ ଲୋ ମାଆ । ମୋଠି ତୋ ପାଇଁ କଅଣ ଅଛି ?

ରାଣୀ ମହୁମାଛି ଗୁଣୁଗୁଣୁ ହୋଇ କହିଲା, 'ଭୁଲ ହୋଇଗଲା । ମହାରାଜଙ୍କ ମୁହଁ ଆମକୁ ଗୋଟିଏ ଫୁଲ ପରି ଦେଖା ଦିବାରୁ ସେଥିରୁ ସେ ଏ ରାଜ୍ୟର ସବୁଯାକ ମହୁ ଲୁଚେଇ ରଖିଚନ୍ତି ବୋଲି ଆମର ମନେ ହେଲା । କିନ୍ତୁ ଏବେ ଦେଖିଲୁ ସେ ଏତେ ଚତୁର ଯେ ସେ ସବୁଯାକ ମହୁ ତାଙ୍କ ପ୍ରାସାଦରେ ହିଁ ରଖି ଦେଇ ଆସିଛନ୍ତି ।

ବୃଦ୍ଧ କଥାର ଶେଷ ଅଂଶତକ ଶୁଣିଲାବେଳକୁ ରାଣୀ ମହୁମାଛି ସେଠୁ ଉଡ଼ି ଅନେକ ଦୂରକୁ ଚାଲିଯାଇଥିଲା ।

(ପ୍ରଜାତନ୍ତ୍ର-୧୨।୧୨।୧୯୯)



# ।। ରୋଗ ହେଲେ ।।

ଭାରତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ଚନ୍ଦ୍ରଲୋକର ଲୋକପ୍ରିୟ ସରକାର ତାଙ୍କ ରାଜ୍ୟରେ ଗୋଟିଏ ଇସ୍ପାତ କାରଖାନା ପ୍ରତିଷ୍ଠା କଲେ । କାରଖାନାଟି ଇଣ୍ଡିଆ କୋଲବୋରେସନ୍‌ରେ ହୋଇଥିଲା । ଚୁକ୍ତିଅନୁସାରେ ଆମର କେତୁ ଲୋକ ସେଠି ଏବେ ମଧ୍ୟ କାମ କରୁଚନ୍ତି । କାରଖାନା ଭଲ ଚାଲିଲା । ବେଶ ପ୍ରଫିଟ ମଧ୍ୟ କଲା । ଚନ୍ଦ୍ରଲୋକର ଏକମାତ୍ର ଇସ୍ପାତ କାରଖାନା ପ୍ରଫିଟରେ ଚାଲିବା ସ୍ୱାଭାବିକ । ଏମିତି ହେଲା ଯେ କାରଖାନାର ଲୋକମାନେ ଦିନକୁ ଘଣ୍ଟାଏ ଦି ଘଣ୍ଟା କାମ କଲେ ମଧ୍ୟ ପ୍ରଫିଟ ହେଲା । ଥରେ ଥରେ ତ ଏମିତି ହେଲା କର୍ମଚାରୀମାନେ ମାସକୁ ଦି' ଚାରିଥର ଆସି ଖାଲି ମୁହଁ ମାରି ଦେଇ ଗଲେ ମଧ୍ୟ କାରଖାନା ଏମିତି ଚାଲିଲାଯେ ପ୍ରତିବର୍ଷ ବୋନସ ହାର ପ୍ରବଳ ବେଗରେ ବଢ଼ି ବଢ଼ି ଚାଲିଲା ।

କାରଖାନାର ସୁନାମ ଚାରିଆଡ଼େ ବିସ୍ତୃତ ହୋଇ ପଡ଼ିଲା । କାରଖାନା ସୁନାମ ଯେତିକ ବଢ଼ିଲା ଆମ ଭାରତବର୍ଷର ନାଁ ସେତିକ ବଢ଼ିଲା । ସେ ସୁନାମ ଗ୍ରହରୁ ଗ୍ରହାନ୍ତରକୁ ବ୍ୟାପି ଗଲା । ଅନ୍ୟ ଗ୍ରହରୁ ସେଠାରେ ଷ୍ଟିଲ ପ୍ଲାଣ୍ଟ ତିଆରି କରିବାକୁ ଆମ ପାଖରେ ଅନୁରୋଧମାନ ଆସି ପହଞ୍ଚିବାକୁ ଲାଗିଲା । ସତ କହିବାକୁ ଗଲେ ସେତେବେଳେ ଆମେରିକା, ଇଂଲଣ୍ଡ, ଜର୍ମାନୀ ଓ ଜାପାନ ପ୍ରଭୃତି ଯେଉଁ ଦେଶମାନେ ପୃଥିବୀରେ ଇସ୍ପାତ ଶିଳ୍ପ ପାଇଁ ସୁନାମ ଅର୍ଜନ କରିଥିଲେ ସେମାନେ ଆମ ଯଶ ଖ୍ୟାତି ଦେଖି ଈର୍ଷା ପରାୟଣ ହେଲେ ଏବଂ ଆମ ନାଁରେ ଇସ୍ପାତ କାରଖାନାମାନ ଡୁବିବାକୁ ବସିଲଣି ବୋଲି ଆମ ବିରୁଦ୍ଧରେ ଅପପ୍ରଚାର ଆରମ୍ଭ କରି ଦେଲେ ।

ତେବେ ଯେ ଯା ହେଉ ଚନ୍ଦ୍ରଲୋକରେ ସେ କାରଖାନାଟି କିନ୍ତୁ ବେଶ ଭଲ ଚାଲୁଥାଏ । ତାକୁ ଦେଖିବାକୁ ଚନ୍ଦ୍ରଲୋକର ମନ୍ତ୍ରୀ ତଥା ଭି.ଭି.ଆଇ.ପିମାନେ ମାସକୁ ତିନି ଚାରିଥର ଆସି ସେଠି କ୍ୟାମ୍ପକରୁଥିଲେ ।

ସେମାନେ ପ୍ରାପ୍ତ ପ୍ରତିବେଦନ ଶ୍ରମିକମାନଙ୍କର ଗୋଟାଏ ଦୃଷ୍ଟା ବିଘାଟ ବର୍ଗ ସୃଷ୍ଟି କଲେ ଏବଂ ସେମାନଙ୍କର କାମ ପାଇଁ ସେମାନଙ୍କୁ ବାହାବା ଦେବାକୁ ଆରମ୍ଭ କଲେ । ସେମାନଙ୍କ ପାଇଁ ବିଭିନ୍ନ ପୁରସ୍କାର ଯୋଜନାମାନ ଖଞ୍ଜା ଗଲା ।

ଅନ୍ୟ ପଟରେ ମନ୍ତ୍ରୀ ଓ ଭି ଆଇ ପି ମାନଙ୍କ ଗସ୍ତ ସଂଖ୍ୟା ଏତେ ବଢ଼ିଗଲା ଯେ ସେମାନଙ୍କ ରହଣୀ ପାଇଁ ଗେଷ୍ଟ ହାଉସ ଅଭାବ ପଡ଼ିବାରୁ ନୂଆ ପାଞ୍ଚତାରକା ଗେଷ୍ଟ ହାଉସ ମଧ୍ୟ ତିଆରି ହେଲା । ସମସ୍ତେ କାରଖାନାଟିକୁ 'ଜାତିର କୋଣାର୍କ'' ବୋଲି କହିଲେ ।

ଦିନକର କଥା ସେହି କାରଖାନାରେ ଦିନେ ଘଟଣାଟିଏ ଘଟିଲା । କାରଖାନାର ଶ୍ରମିକମାନଙ୍କ ପାଇଁ ଥିବା ବିଶାଳକାୟ ହସପିଟାଲର ଚିଫ୍ ମେଡିକାଲ ଅଫିସର ସେଦିନ ରାତି ଦୁଇଟାବେଳେ ଯେଉଁ ଟେଲିଫୋନ କଲଟିଏ ପାଇଲେ ସେଥିରେ ତାଙ୍କ ମୁଣ୍ଡ ବୁଲାଇ ଦେଲା । ଏତେ ରାତିରେ କ'ଣ କରିବେ ସେ ଠିକ କରି ପାରିଲେନି । ଅନ୍ୟ ଉପାୟ ନ ଦେଖି ସେ ସେତେବେଳେ ହସପିଟାଲର ଅପରେସନ ଥିଏଟର ପାଖରେ ଆସି ପହଞ୍ଚିଲେ ସେ ଦେଖିଲେ କାରଖାନାର ସବୁ ବଡ଼ ବଡ଼ ଅଫିସର ସେଠି ମୁହଁ ଶୁଖେଇ ଠିଆ ହୋଇଛନ୍ତି । ଏପରିକି ମେନେଜିଂ ଡାଇରେକ୍ଟର ମଧ୍ୟ ଗୋଟାଏ କୋଣରେ ପଡ଼ିଥିବା ସୋଫାରେ ମୁହଁ ତଳକୁ ପୋତି ବସିଛନ୍ତି । ସମସ୍ତଙ୍କ ମୁହଁ କାନ୍ଦ କାନ୍ଦ ଭାବ । ସେମିତି ଏଇନେ ଲୁହମାନେ ଆଷାଢ଼ ମେଘରୁ ଟପାଟପ ତଳକୁ ଡେଇଁ ପଡ଼ିବେ ।

ଅଫିସରମାନେ ଚିଫ୍ ମେଡିକାଲ ଅଫିସରଙ୍କୁ ଘେରିଗଲେ । ସେମାନେ କହିଲେ, ଡକ୍ଟର ଆପଣ ଯେମିତି ହେଲେ ରୋଗୀଟିକୁ ବଞ୍ଚାନ୍ତୁ । ଆପଣଙ୍କ ଛଡ଼ା ଆମକୁ ଆଜି ଏଥିରେ କେହି ସାହାଯ୍ୟ କରିପାରିବ ନାହିଁ । ଏହା ଆମ ପାଇଁ ଏକ ସମ୍ମାନର ପ୍ରଶ୍ନ ହୋଇ ପଡ଼ିଛି । ଏତିକିବେଳେ ମେନେଜିଂ ଡାଇରେକ୍ଟର ତାଙ୍କୁ ପାଖକୁ ଡାକି କହିଲେ ଏଥିପାଇଁ ଯେତେ ପଇସା ଖର୍ଚ୍ଚ ହେଉ ପଛେ ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଏଥିପାଇଁ ମନ୍ତ୍ରୀଙ୍କଠାରୁ ସ୍ପେଶାଲ ମଞ୍ଜୁରୀ ଆଣି ଦେବି । ଯଦି ବାହାରୁ କୌଣସି ଡାକ୍ତର ବା ଔଷଧ ଦରକାର ତାହାର ବ୍ୟବସ୍ଥା ମଧ୍ୟ କରନ୍ତୁ । ସେ ତାଙ୍କ କାନରେ ହାତ ରଖି କହିଲେ କଥାଟା ମନ୍ତ୍ରୀଙ୍କ କାନକୁ ଯାଇ ସାରିଲାଣି । ହୁଏତ ସେ ନିଜେ ମଧ୍ୟ ଆସି ଯାଇ ପାରନ୍ତି ।

ଶଫ୍ ମେଡିକାଲ ଅଫିସର ସବୁ ଶୁଣିଲା ପରେ ଚରଚରରେ ଉଠି ଭିତରକୁ ପଶି ଯାଉଥିଲାବେଳେ ପଚାରିଲେ ରୋଗୀଟି କିଏ ?

ମେନେଜିଂ ଡାଇରେକ୍ଟର ଉତ୍ତର ଦେଲେ ରୋଗୀଟି କିଏ ସେଇଟା ଏବେ ବଡ଼ ପ୍ରଶ୍ନ ନୁହେଁ ଡକ୍ଟର । ଯାହା ଆମକୁ ବେଶୀ ଚିନ୍ତିତ ଓ ବ୍ୟଥିତ କରିଚି ତାହା ହେଉଚି ତାର ହୋଇଚି କଅଣ ?

ଡାକ୍ତର ସେଇଠି ଅଟକି ଗଲେ ଏବଂ କହିଲେ, ଓହୋ ରୋଗଟା ତେବେ ଏ ଯାଏ ଚିହ୍ନା ପଡ଼ି ନାହିଁ ?

ସମସ୍ତେ ଏକାସ୍ୱରରେ କହିଲେ ନା ।

ସେ ସେଇଠି ଠିଆ ହେଲେ ଏବଂ କଥାଟାକୁ ଟିକିଏ ଚିନ୍ତା କରି କହିଲେ ତେବେ ତ ଏବେ ଆମର ସବୁ ବିଭାଗୀୟ ମୁଖ୍ୟଙ୍କୁ ଏଠାକୁ ଡକାଇବାକୁ ପଡ଼ିବ । ସେ ସଙ୍ଗେ ସଙ୍ଗେ ପାଖରେ ଠିଆ ହୋଇଥିବା ଜଣେ ଜୁନିଅର ଡାକ୍ତରଙ୍କୁ ଡାକି କହିଲେ ଶୀଘ୍ର ସବୁ ବିଭାଗୀୟ ମୁଖ୍ୟଙ୍କୁ ଆସିବାକୁ ଖବର ଦିଅ ।

ଜୁନିଅର ପଚାରିଲେ, ସ୍ତ୍ରୀରୋଗ ବିଶେଷଜ୍ଞ ?

ମୁଖ୍ୟ ଡାକ୍ତର ଏ କଥାର ଉତ୍ତର ଦେଇ ନ ପାରି ମେନେଜିଂ ଡାଇରେକ୍ଟରଙ୍କୁ ଅନେଇଲେ । ମେନେଜିଂ ଡାଇରେକ୍ଟର ଏକଜିକ୍ୟୁଟିଭ ଡାଇରେକ୍ଟରଙ୍କୁ ଅନେଇଲେ । ଏକଜିକ୍ୟୁଟିଭ ଡାଇରେକ୍ଟର ତାଙ୍କ ପାଖରେ ଠିଆ ହୋଇଥିବା ଡାଇରେକ୍ଟର (ପ୍ରଡକସନ)ଙ୍କୁ ଦେଖିଲେ । ସେ ଜଣେ ଚତୁର ବ୍ୟକ୍ତି । ମନ୍ତ୍ରୀଙ୍କ ଲୋକ ହିସାବରେ ନୂଆ ଏପଏଣ୍ଟମେଣ୍ଟ ପାଇଚନ୍ତି । ଏବେ ଏବେ ତିନିଟା ଫରେନ ଦେଶରୁ ଟ୍ରେନିଂ ମଧ୍ୟ ନେଇ ଫେରିଚନ୍ତି । ତେଣୁ ଅନ୍ୟାନ୍ୟ ସମସ୍ତ ଅଫିସରଙ୍କ ଅପେକ୍ଷା ତାଙ୍କର ଜ୍ଞାନ ଓ ବୁଦ୍ଧିକୁ ସମସ୍ତେ ତାରିଫ କରନ୍ତି । ସେ ତୁରନ୍ତ ଉତ୍ତର ଦେଲେ, 'ଆପଣ ଆଜି ଆମକୁ କିଛି ପଚାରନ୍ତୁ ନାହିଁ ଡକ୍ଟର । ଟେକ୍ ଇଓର ଓନ ଡିସିସନ ।'

ସାର୍, ଆନାସ୍ଥେସିଆ ମୁଖ୍ୟଙ୍କୁ ଡାକିବି ? ଜୁନିଅର ଡାକ୍ତର ପୁଣି

ଥରେ ତାଙ୍କ ତଫ୍‌କୁ ପ୍ରଶ୍ନ କଲେ ।

ଏଥର ମେନେଜିଂ ଡାଇରେକ୍ଟର ନିଜ ତରଫରୁ କହିଲେ 'ରୋଗୀତ ଏବେ ମଧ୍ୟ କୋମା ଷ୍ଟେଜରେ ଅଛି । ଆଉ ଆନାସ୍ଥେସିଆର ଆବଶ୍ୟକତା କଅଣ ? ତେବେ ଆପଣ ଚିନ୍ତା କରନ୍ତୁ ।'

ଅଳ୍ପ ସମୟ ଭିତରେ ସେଠାରେ ହସପିଟାଲର ସବୁ ବିଭାଗୀୟ ମୁଖ୍ୟ ଆସି ପହଞ୍ଚିଲେ । ମୁଖ୍ୟ ଡାକ୍ତର ସେମାନଙ୍କୁ କହିଲେ ଆପଣମାନେ ପ୍ରଥମେ ରୋଗୀକୁ ପରୀକ୍ଷା କରନ୍ତୁ ଏବଂ ମୋତେ ଆସି ରିପୋର୍ଟ କରନ୍ତୁ । ତାପରେ ସେ ଅପେକ୍ଷାରତ ଅଫିସରମାନଙ୍କୁ କହିଲେ ଆପଣମାନେ ଯାଇ ସେ ଲାଉଞ୍ଜରେ ବସନ୍ତୁ ।

ଏତିକିବେଳେ ଦୁଇ ତିନିଜଣ ଇଉନିଅନ ନେତା ଆସି ସେଠି ପହଞ୍ଚିଲେ । ସେମାନେ କହିଲେ ମନ୍ତ୍ରୀ ମହୋଦୟ ଆସି ପହଞ୍ଚିଗଲେଣି । ସେ ସାଥିରେ ଦୁଇ ତିନିଜଣ ବଡ଼ ବଡ଼ ଡାକ୍ତର ମଧ୍ୟ ନେଇ ଆସିଛନ୍ତି । ରୋଗୀ ଏଠି ଭଲ ହୋଇ ନ ପାରିଲେ ସେ ତାକୁ ଫରେନ ନେଇଯିବେ ।

ସେମାନେ ମଣିଷ ଡାକ୍ତର ? ମୁଖ୍ୟ ଡାକ୍ତର ପଚାରିଲେ ।

ନେତାଜଣକ ଚୁପ ରହିଲେ । ମୁଖ୍ୟ ଡାକ୍ତର ତାଙ୍କ ପିଅନକୁ ଡାକିଲେ ଏବଂ କହିଲେ ମନ୍ତ୍ରୀ ମହୋଦୟ ଓ ତାଙ୍କ ଲୋକମାନେ ଆସିଲେ ସେମାନଙ୍କୁ ସେ ଲାଉଞ୍ଜ ପାଖରେ ଥିବା ଗେଷ୍ଟ ରୁମଟିରେ ବସେଇ ଦବୁ । ତାପରେ ସେ ତାକୁ ପାଖକୁ ଡାକି ଆଣି କାନ ପାଖରେ କହିଲେ ସେ ରୁମ ଭିତରକୁ ସେମିତି ଆଉ କେହି ନ ଯାଏ । ସବୁଠାରୁ ଭଲ ହେବ ତୁ ଯଦି ତାଙ୍କୁ ରୁମ ଭିତରେ ଭର୍ତ୍ତି କରି ବାହାରୁ ତାଲା ପକେଇ ଦଉ । କେହି ଜାଣିବେ ନାହିଁ ଯେ ତା ଭିତରେ କେହି ଜଣେ ଅଛି ବୋଲି ।

ପିଅନ ତାଙ୍କୁ ଟିକେ ଚାହିଁଲା ଏବଂ କହିଲା, ବୁଝିଗଲି । ଆପଣ ନିଶ୍ଚିନ୍ତରେ ଯାଆନ୍ତୁ ।

ଏତିକିବେଳେ ବାହାରେ ଭୀଷଣ ପାଟି ତୁଣ୍ଡ ଶୁଣାଗଲା । କେହି ଜଣେ

ଆସି କହିଲା ହଜାର ହଜାର ସଂଖ୍ୟାରେ ଶ୍ରମିକମାନେ ଆସି ଗଲେଣି । ସେମାନଙ୍କୁ ଗେଟ ବାହାରେ ଅଟକେଇ ଦିଆଯାଇଛି । ସେମାନେ ଉତ୍ତ୍ୟକ୍ତ ଥିଲା ପରି ଜଣା ପଡୁଛି । ସେମାନେ କହୁଚନ୍ତି ଆମକୁ ବାଟ ଛାଡ଼ । ଆମେ ରୋଗୀକୁ ଖାଲି ଟିକଏ ଦେଖିବୁଁ । ତୁମେ ଯଦି ତାକୁ ଭଲ କରି ନ ପାରିବ ତେବେ ତାକୁ ଆମକୁ ଦେଇ ଦିଅ ।

ମୁଖ୍ୟ ଡାକ୍ତର ଧୀର ପଦକ୍ଷେପରେ ସେମାନଙ୍କ ପାଖକୁ ଆଗେଇ ଗଲେ ଏବଂ କହିଲେ ଆପଣମାନେ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ରୋଗର ଗୁଳି ଆମ ହାତରେ ଅଛି । ଆମେ ତାକୁ ଭଲ କରି ନ ପାରିଲେ ଆଉ କିଏ କରିବ ? ରୋଗଟାତ ଜଣା ପଡ଼ିଗଲାଣି । ତାର ଔଷଧ ମଧ୍ୟ ତିଆରି ସରିଲାଣି । ରୋଗ ଭଲ ହେବାକୁ ଆଉ କେତେ କାଳ ? ଆପଣ ମାନେ ଟିକଏ ଧୈର୍ଯ୍ୟ ଧରନ୍ତୁ ।

ତାପରେ ସେ ତାଙ୍କ ବିଭାଗୀୟ ମୁଖ୍ୟମାନଙ୍କୁ ଡାକି କହିଲେ ଆପଣମାନେ ଏବେ ଘରକୁ ଯାଆନ୍ତୁ ।

ଏତିକବେଳେ ସେ ପିଅନଟି ସେ ଆଡ଼ୁ ଆସିଲା ଏବଂ ଗୁଳିଟିଏ ମୁଖ୍ୟ ଡାକ୍ତରଙ୍କ ହାତକୁ ବଢ଼େଇ ଦେଇ କହିଲା ସାର ନିଅନ୍ତୁ । କାମ ସରିଯାଇଛି

ମୁଖ୍ୟ ଡାକ୍ତର ଗୁଳିଟି ପକେଟରେ ପୂରେଇଲେ । ତାଙ୍କ ମୁହଁରେ ଟିକିଏ ହସ ଉକୁଟି ଉଠୁଥିଲା ।

ବାହାରେ ପାହୁଥିବା ରାତିର ରଙ୍ଗ ଫୁଟି ଉଠୁଥିଲା ।

(ନାଗରିକ-୧ମ ବର୍ଷ, ପ୍ରଥମ ସଂଖ୍ୟା)



# ॥ ନପୁଂସକମାନଙ୍କ ରାଜ୍ୟରେ ॥

ପ୍ରଧାନମନ୍ତ୍ରୀ ସେଦିନ ଖବର କାଗଜଟି ହାତରେ ଧରି ଅଟକି ଗଲେ ତାଙ୍କ ଆଖି ସେ ଖବରଟି ଉପରେ ଲାଗି ରହିଲା । କେଜାଣି କାହିଁକି ସେ ଖବରଟି ବାରମ୍ବାର ପଢ଼ିବାକୁ ଲାଗିଲେ ଏବଂ ଯେତେଥର ପଢ଼ୁଥାଆନ୍ତି ସେତିକି ତାଙ୍କ ମୁଖ ମଣ୍ଡଳରେ ଗୋଟିଏ ଗଭୀର ଚିନ୍ତାର ରେଖା ଫୁଟି ଉଠୁଥାଏ । ସେ ତାଙ୍କ ପାଖରେ ଥିବା କମ୍ପ୍ୟୁଟରରେ ହାତ ମାରିଲେ । ସେଥିରେ ସେ ଯାହା ଦେଖିଲେ ସେଥିରେ ତାଙ୍କ ମନ ଅଧିକ ଭାରାକ୍ରାନ୍ତ ହୋଇ ଉଠିଲା । କ୍ଷଣକୁ କ୍ଷଣ ସେ ଯେମିତି ବଡ଼ ଆଶ୍ୱସ୍ତ ବୋଧ କଲେ ।

ସେ ଚଉକିରେ ସିଧା ହୋଇ ବସିଲେ ଏବଂ ତାପରେ ଆଖି ବୁଜି କଅଣ ଚିନ୍ତା କରିବାକୁ ଲାଗିଲେ ।

ପ୍ରଧାନମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟେରୀ ବଡ଼ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କର ପ୍ରଧାନମନ୍ତ୍ରୀଙ୍କ ସହିତ ବହୁ ଦିନର ସମ୍ପର୍କ । ସେ କବାଟର ପିପ୍ ହୋଲ ଦେଇ ସୁଆ ଭିତରେ ତିନି ଚାରିଥର ଦେଖି ସାରିଲେଣି । ଏତେ ଗଭୀର ଚିନ୍ତାମଗ୍ନ ଥିବାର ସେ ପ୍ରଧାନମନ୍ତ୍ରୀଙ୍କୁ କେବେ ଦେଖି ନାହାନ୍ତି । ଫାଇଲ ଉପସ୍ଥାପନ କରିବାରେ ସେ ସିଦ୍ଧ ହସ୍ତ । ଖାଲି ଦେଖନ୍ତି ଓ ତାପରେ ସନ୍ତକଟିଏ କରି ଦେଇ ଅନ୍ୟ ପାଖରେ ଥୋଇ ଦିଅନ୍ତି । ଆବଶ୍ୟକ ହେଲେ ସେ କିଛି ପଦେ ଦି'ପଦ ସେଥିରେ 'ଲେଖନ୍ତି । ନଚେତ ସେତିକି ମଧ୍ୟ ଦରକାର ହୁଏ ନାହିଁ । ତାଙ୍କ ଅଫିସରେ ଗୋଟାଏ ଟେବୁଲରେ ଅବଶ୍ୟ କିଛି ଜାଣିପୂ ଖବର ପତ୍ର ଯଥା 'ଟାଇମସ ଅଫ ଇଣ୍ଡିଆ', 'ଷ୍ଟେଟସମେନ' 'ହିନ୍ଦୁ' ଇତ୍ୟାଦି ଇତ୍ୟାଦି ସବୁବେଳେ ଥାଏ । ଫାଇଲ ଦେଖି ଦେଖି ଥକି ଗଲେ ସେ ନିଜ ମନକୁ ଟିକିଏ ହାଲୁକା କରିବାକୁ ବେଳେବେଳେ ସେଇ ଖବରକାଗଜ ଦେଖନ୍ତି । ନଚେତ ଆବଶ୍ୟକ ହୁଏ ନାହିଁ । ସାଧାରଣତଃ ଏସବୁ ଦରକାର ହୁଏ ରାତି ଦଶଟା ପରେ । କିନ୍ତୁ ଆଜି ଏମିତି କଅଣ

ହେଲା ଯେ ପ୍ରଧାନମନ୍ତ୍ରୀ ଖବର କାଗଜଟା ଦେଖୁ ଦେଖୁ ଏମିତି ଚିନ୍ତା ମଗ୍ନ ହୋଇଗଲେ ?

ପ୍ରାଇଭେଟ ସେକ୍ରେଟେରୀ ଭାବିବାକୁ ଲାଗିଲେ । ମନ୍ତ୍ରୀମଣ୍ଡଳକୁ ଏବେ ନିକଟ ଭବିଷ୍ୟତରେ କୌଣସି ବିପଦ ନାହିଁ ବୋଲି ଏଇ ଦୁଇ ଦିନ ତଳେ ପାର୍ଟି ଅଫିସରୁ ଗୋଟାଏ ବିବୃତି ଦିଆଯାଇଥିଲା । ତାହାତ ଖୁବ ବଡ଼ ବଡ଼ ଅକ୍ଷରରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଛି । ଇଲେକ୍ଟ୍ରୋନିକ ମିଡ଼ିଆମାନେ ତାକୁ ନିୟମ ଅନୁସାରେ ତିନିଦିନ ଯାକ ତିନିଥର ଲେଖାଏଁ ପ୍ରଚାର କରି ସାରିଛନ୍ତି । ତାଛଡ଼ା ପ୍ରଧାନମନ୍ତ୍ରୀଙ୍କ ଏକାନ୍ତ ବିଶ୍ୱସ୍ତ ଜ୍ୟୋତିଷ ସମ୍ରାଟ, ପଦ୍ମଶ୍ରୀ ଶ୍ରୀଯୁକ୍ତ ରାମ ଲକ୍ଷଣ ଶର୍ମା, ଜ୍ୟୋତିଷ ଶିରୋମଣି ଯେ କି ପ୍ରତି ସପ୍ତାହରେ ଶନିବାର ଦିନ ମନ୍ତ୍ରୀମଣ୍ଡଳର ସ୍ଥାୟିତ୍ୱ ଉପରେ ବିଶେଷ ଗଣନା କରି ଯେଉଁ ଉପଦେଶ ଦିଅନ୍ତି ସେଇଟା ମଧ୍ୟ ସେ ଆଜି ପାଇଛନ୍ତି । ପ୍ରଧାନମନ୍ତ୍ରୀ ତାକୁ ମଧ୍ୟ ଦେଇଛନ୍ତି । ତାଛଡ଼ା ତାଙ୍କ ସ୍ୱାସ୍ଥ୍ୟ ମଧ୍ୟ ଏକଦମ ଠିକ ଅଛି । ଆଜି ସକାଳେ ଆସିଥିବା ବିଶେଷଜ୍ଞଦଳଙ୍କ ସ୍ୱତନ୍ତ୍ର ବୁଲେଟିନ ମଧ୍ୟ ସେ ଦେଖିଛନ୍ତି । ଖାଲି ବେଳେ ବେଳେ ତାଙ୍କ ଡାହାଣ ଆଖିଟା କାହିଁକି ଡେଉଁଚି ତା'ର ଉପରେ ଅଧିକ ପର୍ଯ୍ୟବେକ୍ଷଣର ଆବଶ୍ୟକତା ରହିଚି ବୋଲି ଅଲ ଇଣ୍ଡିଆ ଇନସ୍ଟିଚ୍ୟୁଟରୁ ଆସିଥିବା ଚକ୍ଷୁ ବିଶେଷଜ୍ଞ ଦଳ ଯେଉଁ ରିପୋର୍ଟ ଦେଇଛନ୍ତି ତାକୁ ସେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କଠାକୁ ପଠେଇଛନ୍ତି । ସ୍ୱାସ୍ଥ୍ୟମନ୍ତ୍ରୀ ମଧ୍ୟ ଏଇ ସନ୍ଧ୍ୟାରେ ଟେଲିଫୋନ କରି ଜଣେଇଚନ୍ତି ଯେ ସେ ଏଥିପାଇଁ ଆମେରିକାରୁ ଗୋଟାଏ ବିଶେଷଜ୍ଞ ଦଳ ଆସିବାକୁ ରିକ୍ୟୁଜିସନ ପଠେଇ ସାରିଛନ୍ତି । ଏଥିପାଇଁ ଅର୍ଥ ମନ୍ତ୍ରଣାଳୟକୁ ମଧ୍ୟ ଏକ କୋଟି ତିରିଶ ଲକ୍ଷ ପଚିଶ ହଜାର ଟଙ୍କା ମଞ୍ଜୁର କରିବାକୁ ଲେଖିଚନ୍ତି ବୋଲି ମଧ୍ୟ ଜଣେଇଚନ୍ତି । ସେ ଫୋନରେ ଏକଥା ମଧ୍ୟ କହିଲେ ଯେ ଯଦି ପ୍ରଧାନମନ୍ତ୍ରୀ ପଚାରନ୍ତି ଏତେ ଟଙ୍କା କାହିଁକି ଖର୍ଚ୍ଚ ହେବ ତେବେ ଆପଣ କହିବେ ଯେ ଅତି ନିକଟରେ ଆମ ଦଳରେ ଜନେ କରିଥିବା ଜଣେ ସାଂସଦଙ୍କ ଆଖିରୁ ସବୁବେଳେ ନେଞ୍ଜରା ବହୁଥିଲା । ତାକୁ ଏଠାରେ କୌଣସି ଡାକ୍ତର ଭଲ କରି ନ ପାରିବାରୁ ତାଙ୍କ ପାଇଁ ଆମେରିକାରୁ ଯେଉଁ ଔଷଧ ପତ୍ର ଅଣାଗଲା ତା ପାଇଁ ମୋଟାମୋଟି ଦଶ ହଜାର ଡଲାର ଖର୍ଚ୍ଚ ହୋଇଚି । ସେଇ ଅନୁସାରେ ପ୍ରଧାନମନ୍ତ୍ରୀଙ୍କ ଆଖି ଡେଇଁବା ରୋଗର ଚିକିତ୍ସା ପାଇଁ କିଛି ଅଧିକ ଖର୍ଚ୍ଚ ନିଶ୍ଚୟ ହେବ ।

ବ୍ୟକ୍ତିଗତ ସଚିବ ବ୍ୟସ୍ତ ହୋଇ ପଡ଼ିଲେ ଯେତେବେଳେ ପ୍ରଧାନମନ୍ତ୍ରୀଙ୍କ ବ୍ୟକ୍ତିଗତ ସହାୟକ ଆସି ପୁଣି ଥରେ ଖବର ଦେଲେ ଯେ ଏବେ ପ୍ରଧାନମନ୍ତ୍ରୀ ଏକ ଲମ୍ବରେ ଘୁଁଣ୍ଟକୁ ଚାହିଁ ରହିଛନ୍ତି । ସେ ଭାବିଲେ ପ୍ରଧାନମନ୍ତ୍ରୀ ତ କେବେବି ଘୁଣ୍ଟକୁ ଦେଖନ୍ତି ନାହିଁ । ସେ କଅଣ ଅନ୍ୟ ମାନଙ୍କ ପରି ଅନ୍ତର୍ଜାମୀ ପ୍ରଧାନମନ୍ତ୍ରୀ ହୋଇଚନ୍ତି କି ? ତାଙ୍କ ଜ୍ଞାନ କେତେ ଗଭୀର । ନଖ ଦର୍ପଣରେ ସବୁ ଦେଖୁଥିବା ପ୍ରଧାନମନ୍ତ୍ରୀ କେବେବି ଘୁଣ୍ଟକୁ ଦେଖିବେ ନାହିଁ । ଘୁଣ୍ଟରେ ବା କଅଣ ଅଛି ? ତାଙ୍କ ମୁଣ୍ଡ ଉପରେ ଥିବା ଘୁଣ୍ଟଟା ଯେ କେତେ ଶକ୍ତ ସେକଥା କଅଣ ସେ ଜାଣିନାହାନ୍ତି ?

ସେ ପ୍ରଧାନମନ୍ତ୍ରୀଙ୍କୁ ନିଜେ ଯାଇ ଦେଖି ଆସିବାକୁ ଇଚ୍ଛା କଲେ । କିନ୍ତୁ ବିନା କାରଣରେ ଭିତରକୁ ଯିବେ କେମିତି ? ତେଣୁ ଗୋଟାଏ ଫାଇଲ ଧରି ସେ ସନ୍ତର୍ପଣରେ ଭିତରକୁ ପ୍ରବେଶ କଲେ ଏବଂ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରି ଉଚିତ ସ୍ଥାନରେ ଠିଆ ହେଲେ ।

ପ୍ରଧାନମନ୍ତ୍ରୀ ଜାଣିଲେ ସେକ୍ରେଟେରୀ ଆସିଚନ୍ତି । ସେ ତାଙ୍କ ଆଡ଼କୁ ନ ଅନେଇ ହାତ ଠାରି ଦେଲେ-ଅର୍ଥାତ ଫାଇଲ ଆଣ ।

ସେକ୍ରେଟେରୀ ଫାଇଲ ରଖିଲେ । ପ୍ରଧାନମନ୍ତ୍ରୀ ଯେତେବେଳେ ଦେଖିଲେ ଯେ ସେ ସେଥିରେ ଆଗରୁ ଦସ୍ତଖତ କରି ସାରିଚନ୍ତି ସେ ସେକ୍ରେଟେରୀଙ୍କୁ ଅନେଇଲେ । ସେକ୍ରେଟେରୀ ନିଜର ଭୁଲ ବୁଝି ପାରିଲେ । ସେ ନିଜରେ ସଙ୍କୋଚିତ ହୋଇଗଲେ । ଏତେବଡ଼ ଗୁରୁତର ଅପରାଧ ସେ କେବେ କରି ନାହାନ୍ତି । ତାଙ୍କ ମୁହଁ ତଳକୁ ହୋଇଗଲା । ଏଥର ପ୍ରଧାନମନ୍ତ୍ରୀ ହୁଏତ ବୁଝି ପାରିଲେ ଯେ ସେକ୍ରେଟେରୀ କଅଣ ପାଇଁ ବିନା କାମରେ ଭିତରକୁ ପଶି ଆସିଲେ ।

ସେ କହିଲେ ମାନବ ସମ୍ବଳ ମନ୍ତ୍ରୀଙ୍କୁ ଡାକ ।

ସେକ୍ରେଟେରୀ ଦ୍ରୁତ ପଦକ୍ଷେପରେ ସେଠୁ ବାହାରି ଆସିଲେ । ତାଙ୍କ ସ୍ୱାସ୍ଥ୍ୟ କଥା ତାଙ୍କୁ ଆଉ ପଚାରିବାକୁ ତାଙ୍କର ମୋଟେ ମନେ ପଡ଼ିଲାନି । ତାଛଡ଼ା ଆସିଲାବେଳେ ମଧ୍ୟ ସେ ଦେଖିଲେ ଯେ ପ୍ରଧାନମନ୍ତ୍ରୀଙ୍କ ହାତରେ ଏବେ ମଧ୍ୟ ସେହି ଖବର କାଗଜଟା ରହିଛି । ସେ ତେଣୁ ଖବର କାଗଜ,

କମ୍ପ୍ୟୁଟରରେ ଓ ପ୍ରୀତ ସମ୍ବନ୍ଧିତ ମାନବ ସମ୍ବଳ ମନ୍ତ୍ରୀଙ୍କର କ୍ଷମତା ରହିବାର କିଛି ଯୁକ୍ତି ପାଉ ନଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କର ବ୍ୟକ୍ତିଗତ ସଚିବ ହିସାବରେ ସେ ଏସବୁ ସାଙ୍କେତିକ ଚିହ୍ନର ଅର୍ଥ ବୁଝିବା କଥା ନଚେତ୍ ସେ ଅଫିସ ଚଳେଇବେ କେମିତି ? ଏଇନେ ମାନବ ସମ୍ବଳ ମନ୍ତ୍ରୀ ଯଦି ପଚାରିବେ କୋଉ ବିଷୟରେ ପ୍ରଧାନମନ୍ତ୍ରୀ ଡାକୁଛନ୍ତି, ସେ କଅଣ କହିବେ ? ବହୁ ଭୟ, ଆଶଙ୍କା ଓ ଅନିଶ୍ଚିତତା ଭିତରେ ଥାଇ ସେ ମାନବ ସମ୍ବଳ ମନ୍ତ୍ରୀଙ୍କୁ ଫୋନ ଲଗେଇଲେ ।

କଥାରେ ଅଛି 'ଯୋଉଠି ବଥା ସେଇଠି କଥା' । ସେ କହିଲେ ବିଷୟଟା ନ ଜାଣିଲେ ମୁଁ ତାଙ୍କ ସାମନାରେ ଅପ୍ରସ୍ତୁତ ହେବି । ଆପଣ ଯଦି ଜାଣି ନାହାନ୍ତି ତେବେ ତାଙ୍କର ପୂର୍ବାପର ଘଟଣା ମୋତେ ଟିକିଏ କହନ୍ତୁ ।

ସେକ୍ରେଟେରୀ ସେଇ କଥା କହିଲେ । ଆଉ ଥରେ ଦୋହରାଇଲେ । ଖବର କାଗଜର ନାଁ ମଧ୍ୟ ମୁଁ ଜାଣି ନାହିଁ । ତାପରେ କମ୍ପ୍ୟୁଟର । ତାପରେ ଫାଙ୍କା ଆଖିରେ ଛାତକୁ ଅନେଇଲେ । ତାପରେ ଆଖି ବୁଜି ଦେଲେ । ସ୍ୟାଠୁ ଆଉ ଅଧିକ କିଛି ମୁଁ ଜାଣି ନାହିଁ ।

ସେତେବେଳେ ସେ କେଉଁ ଫାଇଲ ଦେଖୁଥିଲେ ? କହି ପାରିବିନି । କିନ୍ତୁ ଖବର କାଗଜଟିଏ ଥିବାର ଦେଖିଛି । ସେତେବେଳେ ଆଉ କେହି ଫୋନ କରିଥିଲେ ? ମୋ ମାଧ୍ୟମରେ ଆସିନି । ଯଦି ସେଲ୍ ଫୋନରେ ଆସିଥିବ କହି ପାରିବିନି ।

ଠିକ କେତେଟା ସମୟରେ ସେ ଚିନ୍ତାମଗ୍ନ ହୋଇ ଗଲେ ? କହି ପାରିବିନି । ତେବେ ମୁଁ ୯.୪୫ ମିନିଟ ୬ ସେକେଣ୍ଡରେ ତାଙ୍କୁ ଚିନ୍ତାମଗ୍ନ ଥିବାର ପ୍ରଥମେ ଦେଖିଲି ।

ତା ପରେ ?

ସେ ଛାତକୁ ଅନେଇଲେ ଏବଂ ତା ପରେ ପରେ ଆଖି ବୁଜି ଚିନ୍ତାରେ ନିମଗ୍ନ ହୋଇଗଲେ ।

ଆଖି ବୁଜି ଦେଲେ ? ଠିକ ଜାଣିଚନ୍ତି ?

ଆଜ୍ଞା ହଁ, ମୁଁ ତ ସେଇଆ ଦେଖିଚି ।

ବୁଝିଗଲି ।

ସାର, କଅଣ ବୁଝିଲେ ?

ଏଇଟା ପାକିସ୍ଥାନ ବିଷୟର କଥା । ଏହାର ଉତ୍ତର ପାଇଁ ମୋତେ ଦେଶ ରକ୍ଷା ଏବଂ ବୈଦେଶିକ ବିଭାଗ ମନ୍ତ୍ରୀଙ୍କ ସହିତ ପରାମର୍ଶ ପରେ ଯାହା କିଛି ଠିକ କରିବାକୁ ହେବ । ଏମିତି ଖାଲି ବୁଲି ଗଲେତ ହେବ ନାହିଁ ।

ସାର, ତେବେ ତ ସର୍ବନାଶ ।

କାହିଁକି ?

ଦେଶ ରକ୍ଷା ମନ୍ତ୍ରୀ ଏଇ ସମୟରେ ବିଜ୍ଞାନ ଭବନରେ । ଆମେରିକାରୁ ଆସିଥିବା ଡେଲିଗେଟ୍‌ମାନଙ୍କୁ 'ସମ୍ପ୍ରୁତି ଶାନ୍ତି' ବିଷୟରେ ଭାଷଣ ଦେଉଚନ୍ତି । ସେତ ଏବେ ଫ୍ରି ହେବାକୁ ଆହୁରି ଘଣ୍ଟାଏରୁ ବେଶୀ ସମୟ ଲାଗିବ ଏବଂ ବୈଦେଶିକ ମନ୍ତ୍ରୀ ଏବେ ଇଂଲଣ୍ଡର ହାଇ କମିଶନରଙ୍କ ସ୍ତ୍ରୀଙ୍କର ପଚିଶତମ ଜନ୍ମ ଜୟନ୍ତୀ ପାର୍ଟିରେ ଯୋଗ ଦେଉଚନ୍ତି । ତାଙ୍କୁ ମଧ୍ୟ ଆପଣ ପାଇବେ ନାହିଁ ।

ହାୟ ରାମ ! ଏବେ ତା ହେଲେ କଅଣ ହେବ ?

କିନ୍ତୁ ସାର, ଆପଣ କାହିଁକି ଭାବୁଚନ୍ତି ଯେ ସେ ପ୍ରଶ୍ନଟା ପାକିସ୍ଥାନ ସମ୍ପର୍କିତ ? ସେମିତି ହେଇଥିଲେ ସେ ଆପଣଙ୍କୁ କାହିଁକି ଖୋଜନ୍ତେ ?

ଆପଣ ଜାଣି ନାହାନ୍ତି ? ସେ ଆଖି ବୁଜିଲେ ପାକିସ୍ଥାନ କଥା ଚିନ୍ତା କରନ୍ତି । ତେବେ ଏଥିରେ ମୋତେ ଯୋଡ଼ିବାର ଅର୍ଥ ପ୍ରଶ୍ନଟା ନିଶ୍ଚୟ

ପାକିସ୍ତାନରେ କେତେ ବେକାର ଅଛନ୍ତି ଏବଂ ଆମର କେତେ । ଲୋକ ସଂଖ୍ୟା ଅନୁପାତରେ କାହାର କେତେ । ଏମିତିକା ଗୋଟେ କିଛି ହୋଇଥିବ ବୋଲି ମୋର ଅନୁମାନ । କିମ୍ବା ଏମିତି ବି ହୋଇପାରେ, ଆମ ବଜେଟରୁ କିଛି କାଟି ଡିଫେନ୍ସ ବଜେଟକୁ ଦିଆଯାଇପାରେ । କାରଣ ସେଠିକା ଆବଶ୍ୟକତାଟା ଏବେ ବେଶୀ । ସମସ୍ତେ ଏବେ ସେ ମନ୍ତ୍ରଣାଳୟ ଉପରେ ବେଶୀ ଗୁରୁତ୍ୱ ଦେଉଛନ୍ତି ।

ସେକ୍ରେଟେରୀ ଆଉ ଧୈର୍ଯ୍ୟ ଧରି ରହି ପାରିଲେନି । ସେ କହିଲେ କଥାଟା ଯା ହେଉନା କାହିଁକି ଆପଣ ଶୀଘ୍ର ଆସନ୍ତୁ । ମୁଁ ଅନ୍ତତଃ ଆସନ୍ନ ବିପଦକୁ ରକ୍ଷା ପାଇ ଯାଏଁ ।

ମାନବ ସମ୍ବଳ କହିଲେ ଯେତେ ଶୀଘ୍ର ଗଲେବି ପନ୍ଦର କିଲୋମିଟର ରାସ୍ତାକୁ କୋଡ଼ିଏ ମିନିଟ ନିଶ୍ଚୟ ଲାଗିବ । ଟ୍ରାଫିକ ଜାମ ଏବେ ମଧ୍ୟ ଅଛି । ତେଣୁ ଆପଣ ଗୋଟେ କାମ କରନ୍ତୁ । ତାଙ୍କୁ ଟିକିଏ ଗୁଡ୍ ମୁଡ୍‌କୁ ଆଣିବା ପାଇଁ ଗୋଟାଏ କପ୍ ଲେମୋନଟି ଦେଇ ଦିଅନ୍ତୁ । ସେଇଟା ତାଙ୍କର ପ୍ରିୟ ପାନୀୟ ।

ସେ ହୁଏତ ଆହୁରି କିଛି କହିବାକୁ ଯାଉଥିଲେ । ସେକ୍ରେଟେରୀ କହିଲେ, ସାର ବୋଧେ ଜାଣି ନାହାନ୍ତି ସେ ଆଉ ଖଟା ମୋଟେ ଖାଉ ନାହାନ୍ତି ।

କେବେଠୁ ?

ଏଇ ସାତ ଆଠଦିନ ହେଲା । ସେଥର ସେ ଯେଉଁ ଲକ୍ଷ୍ନୌ ଯାଇ ଥିଲେ ସେଠି ଜଣେ ତାନ୍ତ୍ରିକ ତାଙ୍କୁ ତେଉଁରିଆଟାଏ ଦେଇ କହିଛି ଯେ କୌଣସି ପ୍ରକାର ଖଟା ତିନି ସପ୍ତାହ ପାଇଁ ସମ୍ପୂର୍ଣ୍ଣ ବନ୍ଦ । ତେବେ ସେ ଯା ହେଉ, ସେଦିନ ମାନବସମ୍ବଳ ମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କଠାରେ ଯାଇ ପହଞ୍ଚିଲା ବେଳକୁ ରାତି ୧୦ । ସେ ପହଞ୍ଚିଲା ମାତ୍ରେ ପ୍ରଧାନମନ୍ତ୍ରୀ ତାଙ୍କ ହାତକୁ ଖବର କାଗଜଟା ବଢ଼େଇ ଦେଲେ ଏବଂ କହିଲେ ପଢ଼ନ୍ତୁ ସେଇ ନାଲିଗାର ଦିଆ ହୋଇଥିବା ଅଂଶଟାକୁ ପଢ଼ନ୍ତୁ ।

ମନ୍ତ୍ରୀ ଦେଖିଲେ ।

କିଛି ବୁଝିଲେ ସେ 'ଓପିନିଅନ ପୋଲ୍‌'?

ମନ୍ତ୍ରୀ ମହୋଦୟ ଫାଙ୍କା ଆଖିରେ ପ୍ରଧାନମନ୍ତ୍ରୀଙ୍କୁ ଅନେଇଲେ । ସେ ସେଥିରୁ କିଛି ବୁଝି ନ ଥିଲେ ।

କିଛି ବୁଝି ପାରିଲେନି ? ଆପଣ ଦେଖନ୍ତୁ, ଏତେ ବଡ଼ ଗୋଟାଏ ଜାତୀୟ ପ୍ରଶ୍ନ ପଚରାଯାଇଛି ଇଣ୍ଟରନେଟ୍‌ରେ ଜନମତ ସଂଗ୍ରହ ପାଇଁ । ସେ ପ୍ରଶ୍ନର ଉତ୍ତରରେ କୋଡ଼ିଏ ପରସେଣ୍ଟ କହୁଛନ୍ତି yes, ୩୦ ପରସେଣ୍ଟ କହୁଛନ୍ତି No ଏବଂ ବାକି ୫୦ ପରସେଣ୍ଟ କହୁଛନ୍ତି Can't say ଏଥିରୁ ଆପଣ କଅଣ ବୁଝୁଛନ୍ତି ? ବଡ଼ ବଡ଼ ଜାତୀୟ ଆନ୍ତର୍ଜାତୀୟ ପ୍ରଶ୍ନ ଉପରେ ଆମ ଦେଶର ଗୋଟାଏ ବିରାଟ ଜନସଂଖ୍ୟା । ଯଦି କେବଳ 'କାଣ୍ଟ ସେ' କହନ୍ତି ଅର୍ଥାତ୍‌ ଆମ ଦେଶର ପଚାଶ ଭାଗ ଲୋକ ଯଦି ଦେଶର ସମସ୍ୟା ଗୁଡ଼ିକୁ ବୁଝି ନ ପାରନ୍ତି ତେବେ ଆମ ପାଇଁ ଏହା ଏକ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରିବ ନାହିଁକି ? ଆପଣ ଆଉ ଗୋଟାଏ କଥା ଲକ୍ଷ୍ୟ କରିଛନ୍ତି ? ଆମ ଦେଶରେ ଦିନକୁ ଦିନ ଏଇ 'କାଣ୍ଟ ସେ' କହିବା ଲୋକଙ୍କ ସଂଖ୍ୟା ବଢ଼ୁଛି ଏବଂ ଅତି ଦ୍ରୁତ ଗତିରେ । ମୁଁ କମ୍ପ୍ୟୁଟରରେ ତାର ଗୋଟାଏ ହିସାବ ରଖିଛି । ଦୁଇ ବର୍ଷ ତଳେ ସେମାନଙ୍କ ସଂଖ୍ୟା ଯାହା ଥିଲା ଏବେ ତାହା ୧୫ ଗୁଣ ବଢ଼ିଛି । ତାର ଅର୍ଥ ଦିନ ଆସିବ ଯେତେବେଳେ ଏଇମାନେ ହିଁ ସଂଖ୍ୟା ଗରିଷ୍ଠ ହେବେ ଏବଂ yes ଓ No ମାନେ ଅର୍ଥାତ୍‌ ଯେଉଁମାନେ ସମସ୍ୟାଟିକୁ ଠିକ ଭାବେ ବୁଝିଥିବେ ସେମାନଙ୍କ ସଂଖ୍ୟା ଶୂନ୍ୟରେ ପହଞ୍ଚିବ ଏବଂ ଏଇ 'କାଣ୍ଟ ସେ' ଅର୍ଥାତ୍‌ ଯେଉଁମାନେ ସମସ୍ୟାଟି କଅଣ ବୋଲି ଜାଣି ନ ଥିବେ ସେମାନେ ଆଗକୁ ମାଡ଼ି ଆସିବେ । ଏଥିରେ ଆମ ଦେଶ କେମିତି ଚଳିବ ?

ମନ୍ତ୍ରୀ ମହୋଦୟ ପ୍ରଧାନମନ୍ତ୍ରୀଙ୍କ ମୁହଁକୁ ହାଁ କରି ଅନେଇ ରହିଲେ ଏତେ ସାମାନ୍ୟ ଭଳି ଦେଖାଯାଉଥିବା କଥାଟା ଭିତରେ ଯେ ଏତେ ଗୁରୁତର ସମସ୍ୟାଟିଏ ଲୁଚି ରହିଛି ଏକଥା ଚିନ୍ତା କରି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଦେଶର ଭବିଷ୍ୟତ ଯେ ଏହା ଉପରେ ନିର୍ଭର କରୁଛି ସେ ସେତେବେଳେ ବୁଝି ପାରିଲେ ।

ପ୍ରଧାନମନ୍ତ୍ରୀ ପୁଣି ଆରମ୍ଭ କଲେ । ଧରନ୍ତୁ ଇଣ୍ଟରନେଟରେ ଗୋଟାଏ ପ୍ରଶ୍ନ ଆସିଲା ଆମ ସମ୍ବିଧାନରେ 'ସେକୁଲାରିଜିମ' ଶବ୍ଦ ରହିବା ଉଚିତ କି ନୁହେଁ । କିମ୍ବା ମନେ କରନ୍ତୁ ପ୍ରଶ୍ନ ଆସିଲା ଆମ ଦେଶରେ ଗଣତନ୍ତ୍ର ରହିବା ଉଚିତ କି ନୁହେଁ । ଆମେ ସରକାରରେ ଥାଇ ଲୋକଙ୍କଠୁ କେବଳ ହଁ କି 'ନା' ଆଶା କରିବା କଥା ସେଥିରୁ ଆମେ ହୁଏତ କିଛି ନିର୍ଦ୍ଦେଶ ମଧ୍ୟ ପାଇ ପାରିବା । କିନ୍ତୁ ଯଦି ସମସ୍ତେ ବା ସଂଖ୍ୟାଧିକ ଲୋକ କହନ୍ତି 'କାଣ୍ଟ ସେ' ତେବେ କଅଣ ହେବ ?

ମନ୍ତ୍ରୀ ମହୋଦୟ ହସିଲେ ।

ହସିଲେ ଯେ ?

ସାର୍‌ ଯେଉଁମାନେ ବୋକା ସେଇମାନେ ହିଁ 'କାଣ୍ଟ ସେ' ବୋଲି କହି ଥାଆନ୍ତି । ଆମେ ତାଙ୍କୁ ଆଉ କଅଣ କରି ପାରିବା ?

ମୁଁ ଏମିତିକା ଉତ୍ତରଟିଏ ଆଶା କରୁ ନ ଥିଲି ।

ମନ୍ତ୍ରୀ ମହୋଦୟ ଲଜ୍ଜିତ ହୋଇ ପଡ଼ିଲେ । ପ୍ରଧାନମନ୍ତ୍ରୀ ଯେ ତାଙ୍କ କଥା ପସନ୍ଦ କରୁନାହାନ୍ତି ଏକଥା ସେ ବୁଝି ପାରିଲେ ।

ପ୍ରଧାନମନ୍ତ୍ରୀ କହିଲେ ତାର ଅର୍ଥ ଏଇଆ ଯେ ଏଇଟା ଗୋଟାଏ ବୋକାଙ୍କ ଦେଶ ଏବଂ ମୁଁ ତାର ପ୍ରଧାନମନ୍ତ୍ରୀ ।

ମନ୍ତ୍ରୀ ତଳକୁ ମୁହଁ ପୋତିଲେ ।

ପ୍ରଧାନମନ୍ତ୍ରୀ କହିଲେ ଆପଣ ଜାଣନ୍ତି ଆମ ଗଣତଂତ୍ରରେ ସ୍ୱାଧୀନ ସଦସ୍ୟଙ୍କ ଭୂମିକା ଯାହା ଏ 'କାଣ୍ଟ ସେ' ବାଲାଙ୍କ ଭୂମିକା ସେଇଆ । ଗୁରୁତର ସମସ୍ୟା ଉପସ୍ଥିତ ହେଲେ ଏମାନେ ବାଡ଼ ଉପରେ ବସି ଗୋଡ଼ ହଲାନ୍ତି । ଏଇମାନେ ହିଁ ଗଣତଂତ୍ର ପ୍ରତି ବିପଦ । ଏମାନଙ୍କ ଉପରେ ନିର୍ଭର କଲେ ଦେଶ ନର୍କକୁ ଗଳିଯିବ ।

ମନ୍ତ୍ରୀଙ୍କ ଆଖି ବିସ୍ଫାରିତ ହୋଇଗଲା । ସେ ମନେ ମନେ ଭାବିଲେ କେତେ ଗମ୍ଭୀର ତଥା ଗଭୀର ଅନ୍ତର୍ଦୃଷ୍ଟି ଥିବାନ୍ତି ସିନା ସେ ପ୍ରଧାନମନ୍ତ୍ରୀ ହୋଇ ପାରିଲେ । ସମସ୍ତେ କଅଣ ସେମିତି ହୋଇ ପାରିବେ ? ସ୍ୱତଃ ତାଙ୍କ ପାଟିରୁ ବାହାରି ଆସିଲା, 'ତେବେ ଏମାନଙ୍କୁ ନେଇ ଆମେ କଅଣ କରି ପାରିବା ?'

ସେ କାମ ଆପଣଙ୍କ ମନ୍ତ୍ରଣାଳୟର । ଆପଣ ଚିନ୍ତା କରନ୍ତୁ । ଏମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଯଥାଯଥ ଥଇଥାନ କରାଇ ନ ପାରିଲେ ଏମାନେ ଦିନେ ଆମ ମନ୍ତ୍ରୀମଣ୍ଡଳ ପାଇଁ ବିପଦ ସୃଷ୍ଟି କରିବେ ।

କେମିତି ?

ବୁଝି ପାରିଲେ ନାହିଁ ? ଆମ ମନ୍ତ୍ରୀମଣ୍ଡଳ କେବଳ 'Yes' ଓ 'No' ମାନଙ୍କ ଦ୍ୱାରା ବଞ୍ଚିଛି । ସବୁ ମନ୍ତ୍ରୀମଣ୍ଡଳ କେବଳ 'yes' ଓ 'No'ମାନଙ୍କ ଦ୍ୱାରା ବଞ୍ଚିଛି । ସବୁ ମନ୍ତ୍ରୀମଣ୍ଡଳ ଏମିତି ବଞ୍ଚେ । ଏ ପାଖ ନ ହେଲେ ସେ ପାଖ । ତାକୁଇ କୁହାଯାଏ ଗଣତନ୍ତ୍ର । କିନ୍ତୁ ଏ 'Can't say' ମାନେ କୋଉ କାମରେ ଲାଗନ୍ତି ? ଏମାନଙ୍କ ସଂଖ୍ୟା ବଢ଼ିଲେ ଦେଶ ରହିବ ?

କଅଣ କରି ହେବ ?

ମୋ କଥା ମାନନ୍ତୁ । ଏମାନଙ୍କ ପାଇଁ ଗୋଟାଏ ଟ୍ରେନିଂ ସ୍କୁଲ ଖୋଲି ଦିଅନ୍ତୁ । ଯେତେ 'କାଣ୍ଟ ସେ' କହିବା ଲୋକ ଅଛନ୍ତି ସେମାନଙ୍କ ପାଇଁ ଏ ଟ୍ରେନିଂଟା ବାଧ୍ୟତାମୂଳକ ହେଉ । ଟ୍ରେନିଂଟା ବର୍ଷିକିଆ ହେବ କି ମାସିକିଆ ହେବ ସେ କଥା ଆପଣଙ୍କ ଉପରେ ନିର୍ଭର କରେ । ଟ୍ରେନିଂର ସମସ୍ତ ଖର୍ଚ୍ଚ ସରକାର ବହନ କରୁ । ଅଧିକ ଖର୍ଚ୍ଚ ପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ । ଯାଆନ୍ତୁ ଶୀଘ୍ର କାମ ଆରମ୍ଭ କରନ୍ତୁ ।

ଠିକ ବର୍ଷକ ପରେ ପ୍ରଧାନମନ୍ତ୍ରୀ ପୁଣି ଥରେ ମାନବ ସମ୍ବଳ ମନ୍ତ୍ରୀଙ୍କୁ ଡକାଇଲେ । ପଚାରିଲେ କାମ ସବୁ ଠିକ ଚାଲିଛି ତ ?

ମନ୍ତ୍ରୀ କହିଲେ ସବୁ ଠିକ ଚାଲିଛି । ହଜାର ହଜାର ସଂଖ୍ୟାରେ ସେମାନଙ୍କୁ ଆମେ ଟ୍ରେନିଂ ଦେଇ ତାଙ୍କ ନିଜ ନିଜ ରାଜ୍ୟକୁ ପଠେଇ

ପାରିଲୁଣି । ସେମାନେ ସଫଳତାର ସହିତ କାମ ମଧ୍ୟ କରୁଚନ୍ତି ବୋଲି ତାଙ୍କ ପ୍ରୋଗ୍ରେସ ରିପୋର୍ଟରୁ ଜଣା ପଡ଼ୁଚି । କିନ୍ତୁ ସାର୍...

ପୁଣି କିନ୍ତୁ କଅଣ ?

କେବଳ ଗୋଟିଏ ଦଳକୁ ମୁଁ ପାରୁ ନାହିଁ । ସେମାନେ ମୋଟେ ବଦଳୁ ନାହାନ୍ତି । 'ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ' । ସେମାନଙ୍କ ସଂଖ୍ୟା ବି ବେଶୀ ନୁହେଁ । ମାତ୍ର ଦେଢ଼ଶହ ଭିତରେ ।

ବଦଳିଲେ ନାହିଁ ବୋଲି କେମିତି ଜାଣିଲେ ?

ଦୁଇ ଥର ଟ୍ରେନିଂ ଦେଲା ପରେ ମୁଁ ସେମାନଙ୍କୁ ଯେତେବେଳେ ପଚାରିଲି କଳିଙ୍ଗ ବୀର ବିଜୁ ପଟ୍ଟନାୟକଙ୍କୁ ଭାରତ ରତ୍ନ ଉପାଧି ଦିଆଯିବା ଉଚିତ ? ସେମାନେ କହିଲେ 'କାଣ୍ଟ ସେ' ।

ସେମାନଙ୍କୁ ପୁଣି ପଚାରିଲି ମହାବାତ୍ୟାକୁ ଜାତୀୟ ବିପତ୍ତି ବୋଲି ଘୋଷଣା କରାଯିବା ଉଚିତ ? ସେମାନେ ପୁଣି କହିଲେ 'କାଣ୍ଟ ସେ' ।

ପ୍ରଧାନମନ୍ତ୍ରୀ ମୁଣ୍ଡରେ ହାତ ଦେଇ ବସିଗଲେ ।



## ଏହି ଲେଖକଙ୍କ ଅନ୍ୟ କେତୋଟି ପୁସ୍ତକ

୧- ଦୁଃଖ ଓ ଦୁଃଖ ( ଗଳ୍ପ ସଙ୍କଳନ )
୨- ଗୋଟିଏ ଟେଣ୍ଡୁପଲ ( ଗଳ୍ପ ସଙ୍କଳନ )
୩- ପ୍ରମିଳା ( ଗଳ୍ପ ସଙ୍କଳନ )
୪- ଭାରତ ଭାଗ୍ୟ ବିଧାତା ( ବ୍ୟଙ୍ଗ ଗଳ୍ପ ସଙ୍କଳନ )
୫- ପ୍ରଥମ ପୃଥ୍ୱୀ ( ଉପନ୍ୟାସ )
୬- ଉଟେଙ୍କାର ଉପକଥା ( ଭ୍ରମଣ କାହାଣୀ )
୭- ଅଦ୍ଭୁତ ପୂର୍ବ ( ଭ୍ରମଣ କାହାଣୀ )
୮- ଲୁ ତଥା ଅନ୍ୟ କାହାମସ୍ୱା ( ହିନ୍ଦୀ ଗଳ୍ପ ସଙ୍କଳନ )
ଅନୁବାଦ-କୁମାର ହସନ ଓ ଶ୍ରୀମତୀ ବାସନ୍ତୀ ରଥ
୯- ରବୀନ୍ଦ୍ରନାଥଙ୍କ ଚର୍ଚ୍ଚିତ ଚଟାଣ ( ଅନୁବାଦ)
ଅମୀୟ ବସୁ ଓ ଭୂପେନ ମହାପାତ୍ର

## ଖୁବ୍ ଶୀଘ୍ର ପ୍ରକାଶ ପାଉଛି

୧- ଖୋଲ ( ଗଳ୍ପ ସଙ୍କଳନ )
୨- ଡାଙ୍ଗର ସୃଷ୍ଟି ( ଗଳ୍ପ ସଙ୍କଳନ )